୭

# ମୂଲ୍ୟାୟନ

ଦ୍ୱିତୀୟ ବର୍ଷ : ଦ୍ୱିତୀୟ ସଂକଳନ

## ଗୁରୁପ୍ରସାଦ ବିଶେଷାଙ୍କ

● ପ୍ରବନ୍ଧ, ଆଲୋଚନା ଓ ସମାଲୋଚନା :

କୃଷ୍ଣଚରଣ ସାହୁ—ସତ୍ୟଶଙ୍କର ମିଶ୍ର--ଶରତଚନ୍ଦ୍ର ଶତପଥୀ-ଜାନକୀ ଚରଣ ଦାସ--ବିନୋଦ ବିହାରୀ ପଣ୍ଡା-କୁମୁଦ ଚନ୍ଦ୍ର ଦାଶ--ଲୋଚନ ଚନ୍ଦ୍ର ନାୟକ

● ଗୁରୁପ୍ରସାଦଙ୍କ କବିତା ଓ ମୁଁ :

ନୀଳାଦ୍ରି ଭୂଷଣ ହରିଚନ୍ଦନ—ଶତ୍ରୁଘ୍ନ ପାଣ୍ଡବ—ବଂଶୀଧର ଷଡ଼ଙ୍ଗୀ—ପ୍ରଫୁଲ୍ଲ କୁମାର ତ୍ରିପାଠୀ—ପ୍ରହରାଜ ସତ୍ୟନାରାୟଣ ନନ୍ଦ—ନିତ୍ୟାନନ୍ଦ ପତି

● ଗୁରୁପ୍ରସାଦଙ୍କ ପାଞ୍ଚୋଟି କବିତା : ବିସ୍ତର—ଅନୁଶୀଳନ :

ରେଖା ମହାନ୍ତି—ପଞ୍ଚାନନ ମହାନ୍ତି—ପ୍ରମୋଦ କୁମାର ମହାନ୍ତି—ସୌମେନ୍ଦ୍ର ବାରିକ—ବିଜୟ କୁମାର ଚୌଧୁରୀ

● ଗୁରୁପ୍ରସାଦଙ୍କ ସହ ସାକ୍ଷାତ୍କାର :

● ପରିଶିଷ୍ଟ : 'ସମୁଦ୍ରସ୍ନାନ' ପରବର୍ତ୍ତୀ କବିତା ।

ସଂପାଦନା:

ପ୍ରଫୁଲ୍ଲ କୁମାର ଜଗଦେବ

ମହାନଦୀ ବୁକ୍‌ସ

ମୂଲ୍ୟ : ପାଞ୍ଚ ଟଙ୍କା ମାତ୍ର

# ମୂଲ୍ୟାୟନ -୭

( ସାମୟିକ ସାହିତ୍ୟ-ସମାଲୋଚନା ସଂକଳନ )

* ଦ୍ୱିତୀୟ ବର୍ଷ : ଦ୍ୱିତୀୟ ସଂକଳନ *

## ଗୁରୁପ୍ରସାଦ ବିଶେଷାଙ୍କ

ସମ୍ପାଦକ :

ପ୍ରଫୁଲ୍ଲ କୁମାର ଜଗଦେବ

ଅଧ୍ୟାପକ, ସ୍ନାତକୋତ୍ତର ଇଂରାଜୀ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

ମହାନଦୀ ବୁକ୍ସ

ଭୁବନେଶ୍ୱର

● ସମ୍ପାଦକ :— ପ୍ରଫୁଲ୍ଲ କୁମାର ଜଗଦେବ ।। ଅତିଥି ସମ୍ପାଦକ : ଶିଶିର କୁମାର ବେହେରା ।। ଆଞ୍ଚଳିକ ସମ୍ପାଦକ : ପଞ୍ଚାନନ ମହାନ୍ତି ।। ପରିଚାଳନା / ସମ୍ପାଦକ : ସନ୍ତୋଷ କୁମାର ଖୁଣ୍ଟିଆ, କୃଷ୍ଣଚନ୍ଦ୍ର ତ୍ରିପାଠୀ ।। ପ୍ରଚାର ଅଧ୍ୟକ୍ଷ : ରଞ୍ଜନ କୁମାର ପଟ୍ଟନାୟକ ।।

● ଯୋଗାଯୋଗ : ପ୍ରଯତ୍ନେ—ମୂଲ୍ୟାୟନ ପ୍ରେସ୍
ପ୍ଲଟ୍ ନଂ ବି-୧, ଶହୀଦ ନଗର, ଭୁବନେଶ୍ୱର-୭

● ପାଞ୍ଚୋଟି ସଂକଳନରେ 'ମୂଲ୍ୟାୟନ'ର ଏକ ବର୍ଷ ପୂରଣ ହୁଏ । ପ୍ରତିସଂଖ୍ୟା ତିନିଟଙ୍କା । ବାର୍ଷିକଦେୟ (ବିଶେଷାଙ୍କଗୁଡ଼ିକ ସହିତ) ପନ୍ଦର ଟଙ୍କା ।

● 'ମୂଲ୍ୟାୟନ'ରେ କେବଳ ସାହିତ୍ୟ ଓ ସଂସ୍କୃତିର ସମାଲୋଚନାତ୍ମକ ଲେଖା ପ୍ରକାଶିତ ହୁଏ ଓ ପ୍ରତି ସଂକଳନରେ ନିମ୍ନଲିଖିତ ତିନୋଟି ନିୟମିତ ବିଭାଗ ପତ୍ରସ୍ଥ କରାଯାଏ ।

କ) ପ୍ରବନ୍ଧ, ଆଲୋଚନା ଓ ସମାଲୋଚନା :—ଏ ବିଭାଗଟି ବିଭିନ୍ନ ସାହିତ୍ୟ ଓ ସଂସ୍କୃତି ତତ୍ତ୍ୱ, 'ବାଦ' ଓ ଆନ୍ଦୋଳନ ସମ୍ବନ୍ଧୀୟ ପ୍ରବନ୍ଧ, ତଥା ପ୍ରାଚୀନ, ମଧ୍ୟଯୁଗୀୟ ଓ ଆଧୁନିକ ଓଡ଼ିଆ ସାହିତ୍ୟର ପୁନର୍ମୂଲ୍ୟାୟନାତ୍ମକ ସମାଲୋଚନା ପାଇଁ ଉଦ୍ଦିଷ୍ଟ ।

ଖ) ସ୍ୱାଧୀନତୋତ୍ତର ଓଡ଼ିଆ କବିତା : ବିସ୍ତୃତ-ଅନୁଶୀଳନ :—ସ୍ୱାଧୀନତୋତ୍ତର କାଳରେ ସୃଷ୍ଟ ଅଧିକାଂଶ କବିତା 'ଅବୋଧ୍ୟ', 'ଅର୍ଥହୀନ' 'ନିରର୍ଥକଭାବେ ଦୁର୍ବୋଧ' ଇତ୍ୟାଦି ଅଭିଯୋଗ ପ୍ରଚୁର । କିନ୍ତୁ ଏ ଅଭିଯୋଗର ସତ୍ୟତା କେତେ ? ତା'ର ନିରୂପଣ ପାଇଁ ପ୍ରକାଶ କରାଯାଏ, ଅନ୍ତତଃ ଗୋଟିଏ ସ୍ୱାଧୀନତୋତ୍ତର କବିତାର ବିସ୍ତୃତ ଅନୁଶୀଳନ । ଅନୁଶୀଳନଗୁଡ଼ିକ ମନ୍ତବ୍ୟସର୍ବସ୍ୱ ନ ହୋଇ ଆଲୋଚ୍ୟ କବିତାର ଭାବସତ୍ତା ଓ ଆଙ୍ଗିକ ସମ୍ପର୍କରେ ଯଥେଷ୍ଟ ଆଲୋକପାତ କରନ୍ତି ।

ଗ) ପୁସ୍ତକ-ସମୀକ୍ଷା :—ସଂପୃକ୍ତ ଲେଖକ/ପ୍ରକାଶକ ନୂତନ ପୁସ୍ତକରୁ ଦୁଇଖଣ୍ଡ ଲେଖାଏ ପଠାଇବା ବିଧେୟ ।

● ଲେଖାଗୁଡ଼ିକରେ ପ୍ରକାଶିତ ମତ/ମନ୍ତବ୍ୟ ଏକାନ୍ତଭାବେ ସଂପୃକ୍ତ ଆଲୋଚକଙ୍କର; ତାହା ସମ୍ପାଦକ ବା ପ୍ରକାଶକଙ୍କମତ ବା ତା'ର ପ୍ରତିଫଳନ ବୋଲି ଗ୍ରହଣ କରିନେବା ଉଚିତ ନୁହେଁ ।



# ॥ ସୂଚୀ ॥



● ●

## ॥ ଏ ସଙ୍କଳନର ସମାଲୋଚକ ॥

କୃଷ୍ଣ ଚରଣ ସାହୁ ଉତ୍କଳ ବିଶ୍ୱବିଦ୍ୟାଳୟ ଭୁବନେଶ୍ୱରରେ ଓଡ଼ିଆ ବିଭାଗର ରୀଡ଼ର ॥ ସତ୍ୟଶଙ୍କର ମିଶ୍ର ଜେ : କେ : ବି : ରେ କଲେଜ, କଟକରେ ଇଂରେଜୀ ଅଧ୍ୟାପକ ॥ ଶରତଚନ୍ଦ୍ର ଶତପଥୀ ଉତ୍କଳ ବିଶ୍ୱବିଦ୍ୟାଳୟରେ ଇଂରେଜୀ ଅଧ୍ୟାପକ ॥ ତାରିଣୀ ଚରଣ ଦାସ ଖଲ୍ଲିକୋଟ୍ କଲେଜ, ବ୍ରହ୍ମପୁରରେ ହିନ୍ଦୀ ବିଭାଗରେ ରୀଡ଼ର ଓ ବିଭାଗୀୟ ମୁଖ୍ୟ । ବିନୋଦବିହାରୀ ପଣ୍ଡା ଆନନ୍ଦପୁର କଲେଜ (ଜି: କଟକ)ରେ ଇଂରେଜୀ ଅଧ୍ୟାପକ ॥ କୁମୁଦ ଚନ୍ଦ୍ର ଦାଶ ରୁଷପୁର କଲେଜରେ ଓଡ଼ିଆ ଅଧ୍ୟାପକ ॥ ଗୋବିନ୍ଦଚନ୍ଦ୍ର ନାୟକ ଜଗତସିଂହପୁର କଲେଜରେ ଓଡ଼ିଆ ଅଧ୍ୟାପକ । ମୀନାକ୍ଷୀ ଭୂଷଣ ବିଶ୍ୱବିଦ୍ୟାଳୟ ବିଶ୍ୱଭାରତୀ, ଶାନ୍ତିନିକେତନରେ ଓଡ଼ିଆ ଅଧ୍ୟାପକ । ଇଉନିଭରସିଟି ଗ୍ରାଣ୍ଟ୍ସ କମିସନଙ୍କ ଦ୍ୱାରା ମନୋନୀତ ହୋଇ ସେ ସଂସ୍କୃତ ନାଟକ ସମ୍ପର୍କରେ ଗବେଷଣା କରୁଛନ୍ତି । ଶତ୍ରୁଘ୍ନ ପାଣ୍ଡବ ଜଟଣୀ କଲେଜରେ ଓଡ଼ିଆ ଅଧ୍ୟାପକ ॥ ବଂଶୀଧର ଷଡ଼ଙ୍ଗୀ ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗରେ ଶିକ୍ଷକ-ଗବେଷକ ॥ ପ୍ରଫୁଲ୍ଲ କୁମାର ତ୍ରିପାଠୀ ବି: ଜେ: ବି: କଲେଜ, ଭୁବନେଶ୍ୱରରେ ଇଂରେଜୀ ଅଧ୍ୟାପକ ॥ ପ୍ରହରାଜ ସତ୍ୟନାରାୟଣ ନନ୍ଦ ଓଡ଼ିଶା ସରକାରଙ୍କ ଲୋକସମ୍ପର୍କ ନିର୍ଦ୍ଦେଶାଳୟ, ଭୁବନେଶ୍ୱରରେ ସହକାରୀ ସମ୍ପାଦକ ॥ ନିତ୍ୟାନନ୍ଦ ପତି ଓ ପ୍ରମୋଦ ମହାନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟ ମନୋବିଜ୍ଞାନ ବିଭାଗରେ ଶିକ୍ଷକ ଗବେଷକ ॥ ରେଖା ମହାନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଐତିହାସିକ ଉପନ୍ୟାସ ସମ୍ପର୍କରେ ଗବେଷଣା କରୁଛନ୍ତି ॥ ପଞ୍ଚାନନ ମହାନ୍ତି ଦିଲ୍ଲୀ ବିଶ୍ୱ-ବିଦ୍ୟାଳୟର ଓଡ଼ିଆ ବିଭାଗରେ ଗବେଷକ ॥ ସୌରୀନ୍ଦ୍ର ବାରିକ ଭଦ୍ରକ କଲେଜରେ ଇଂରେଜୀ ରୀଡର ॥ ବିଜୟ କୁମାର ଚୌଧୁରୀ ମହର୍ଷି ମହାବିଦ୍ୟାଳୟ (ଜି: ଢେଙ୍କାନାଳ)ରେ ଓଡ଼ିଆ ଅଧ୍ୟାପକ ॥ ●

# ଭୂମିକା

"ମୋଟ ଉପରେ କହିବାକୁ ଗଲେ, ଅଧିକାଂଶ ମଡର୍ଣ୍ଣ ବା ନୂତନ-ମାନଙ୍କର ସୃଷ୍ଟି ଅକିଞ୍ଚିତ୍କର । ଅବଶ୍ୟ ସୃଷ୍ଟି ତୁଳନାରେ ସେମାନଙ୍କର ଚିତ୍କାର ଅତି ବେଶୀ ... ।

ଦଶବର୍ଷତଳେ ଏହି ଦଳର ଧର୍ମ-ରକ୍ଷକ ଭାବରେ ଦେଖାଦେଲେ ଜନୈକ ଇଂରାଜୀ ଅଧ୍ୟାପକ ଯତୀନ୍ଦ୍ର ମୋହନ ମହାନ୍ତି । ଏହି ଅଧ୍ୟାପକ ପ୍ରଚାର ଚଳେଇଥିଲେ କି, ତାଙ୍କର ଆଶୀର୍ବାଦ-ପ୍ରାପ୍ତ ଦୁଇଜଣ 'ନୂତନ' କବି, ଶ୍ରୀ ଭାନୁଜୀ ରାଓ ଓ ଶ୍ରୀ ଗୁରୁପ୍ରସାଦ ମହାନ୍ତିଙ୍କ ରଚନା ପରି ଉତ୍କୃଷ୍ଟ ସୃଷ୍ଟି, ସମଗ୍ର ଓଡ଼ିଆ ସାହିତ୍ୟରେ କେବେହେଲେ ଦେଖା ଦେଇ ନ ଥିଲା । 'ନୂତନ କବିତା' ନାମକ ଏକ ସଂଗ୍ରହ ପ୍ରକାଶ କରି, ଅଧ୍ୟାପକ ମହାନ୍ତି, ନୂତନ କବିତା ଉପରେ ଯେଉଁ ପ୍ରଚାର କରିଛନ୍ତି ତାହାର ଏକାଂଶ ଏହି—

'ତେଣୁ ଆଧୁନିକ ଓଡ଼ିଆ କବିତାର ପରିପ୍ରେକ୍ଷିତରେ ବିଚାର କଲେ, ଏହି 'ନୂତନ କବିତା'ର ଯଥେଷ୍ଟ ଗୁରୁତ୍ୱ ଅଛି । ଏଲିଅଟ୍ଙ୍କର unification of sensibility ଓ dissociation of sensibility ମଧ୍ୟରେ ଯେତିକି ପ୍ରଭେଦ, 'ନୂତନ କବିତା' ଓ ଆଜିର ଓଡ଼ିଆ କବିତା ମଧ୍ୟରେ ଠିକ୍ ସେତିକି ପ୍ରଭେଦ । ଗୋଟିକୁ ଯଦି ପରିତ୍ୟାଗର କବିତା କୁହାଯିବ, ଅନ୍ୟଟି ସମନ୍ୱୟର କବିତା । ଏହି ସମନ୍ୱୟକ୍ଷମ ମାନସ 'ନୂତନ କବିତା'ର ବଡ଼ କଥା । ଏହାର ନୂତନତା କେବଳ କାବ୍ୟ-ଆବେଗ, ଆଙ୍ଗିକ ବା ଶୃଙ୍ଖଳାରେ ସୀମାବଦ୍ଧ ନୁହେଁ, କାବ୍ୟ-ଅନ୍ତର୍ନିହିତ ଜୀବନ ପ୍ରତି ଦୃଷ୍ଟିଭଙ୍ଗି ମଧ୍ୟ ଓଡ଼ିଆରେ ଅଭିନବ ।'

ଏହି ସାଡ଼ମ୍ବର ଘୋଷଣା ସହିତ, ଉଦ୍ଧୃତ-ଉଚ୍ଛ୍ୱତ ପ୍ରଶଂସିତ ତଥା-କଥିତ 'ନୂତନ କବିତା' ଭିତରେ କି ବ୍ୟବଧାନ ପାଠକେ ଲକ୍ଷେଇଁ

ତାର ବିସ୍ତାର କରନ୍ତୁ । ଏହି 'ନୂତନ-କବିତା' ନାମକ ସଂଗ୍ରହ-ପୁସ୍ତକରେ ଅଧ୍ୟାପକ ମହାନ୍ତି ପ୍ରଥମ ଦ୍ରିଷ୍ଟ କବି ଗୁରୁପ୍ରସାଦ ମହାନ୍ତିଙ୍କର ଛଅଟି କବିତା ସ୍ଥାନ ପାଇଛି । ସେଗୁଡିକ ସବୁ ପ୍ରେମ କବିତା । କିନ୍ତୁ ପ୍ରେମ ନାମକ ଯେଉଁ ମାନବୀୟ ଅନୁଭୂତି ଜୀବନକୁ ରୂପାନ୍ତର ଦିଏ ସେ ପ୍ରେମର ଶବ୍ଦହିଁ ଏଠି ନାହିଁ । ଏଠି ପ୍ରେମ କେବଳ ଜାନ୍ତବ ନୁହେଁ, ତାହା ଘୋର ଅସାମାଜିକ ମଧ୍ୟ । କେତୋଟି ଦୃଷ୍ଟାନ୍ତ ଦିଆଯାଉଛି......ପାଠକେ, ଅଧ୍ୟାପକ ଯତୀନ୍ଦ୍ର ମୋହନ ମହାନ୍ତିଙ୍କ ଦ୍ୱାରା ବିଘୋଷିତ ଏହି ମୃଗାନ୍ତକାରୀ କବିତାରେ ଏତେବେଳକୁ ଏଲିୟଟଙ୍କର 'unification of sensibility', 'ସମନ୍ୱୟକ୍ଷମ ମାନସ', 'ଜୀବନ ପ୍ରତି ଦୃଷ୍ଟିଭଙ୍ଗି' ଇତ୍ୟାଦି ବିରାଟ ବିରାଟ ଗୁଣାବଳୀ, ଯାହା ଶ୍ରୀ ମହାନ୍ତି ଏସବୁଥିରେ ପାଇ ଏପରି ଉଚ୍ଛ୍ୱସିତ ହୋଇ ଉଠିଛନ୍ତି, ସେସବୁ ନିଜେ ଏତେବେଳକୁ ହୃଦୟଙ୍ଗମ କରିପାରିବେଣି ! ଅଧ୍ୟାପକ ଯେପରି କହିଛନ୍ତି, ଏ ପ୍ରକାର ଉଚ୍ଚ କବିତା ପ୍ରକୃତରେ ସମଗ୍ର ଓଡିଆ ସାହିତ୍ୟରେ କେବେ ଦେଖା ଦେଇ ନ ଥିଲା—ସେ ସବୁ ସଂପୂର୍ଣ୍ଣ ଅଭିନବ । ଅଧ୍ୟାପକ ମହାନ୍ତିଙ୍କ ବିଦଗ୍ଧ ମତରେ ଜୀବନପ୍ରତି ଏହି 'ନୂତନ' ଦୃଷ୍ଟିକୋଣ, ବୋଧହୁଏ କେବଳ ଜାନ୍ତବ ଯୌନ-କ୍ଷୁଧା ପ୍ରତି ଦୃଷ୍ଟିପାତ .. ।

କିନ୍ତୁ ଏହି ନକଲି ଏଲିୟଟ୍ ଓ ପାଉଣ୍ଡମାନଙ୍କର ଏସବୁ କବିତାରେ, ବାମପନ୍ଥୀମାନଙ୍କର ଭୂ-ସ୍ୱର୍ଗ-ସ୍ୱପ୍ନ ନାହିଁ, କି 'ୱେଷ୍ଟଲାଣ୍ଡ'ର ବ୍ୟର୍ଥତାମୟ ଯୁଗଯନ୍ତ୍ରଣା ନାହିଁ; ନାହିଁ ମଧ୍ୟ ଏଜ୍ରା ପାଉଣ୍ଡଙ୍କର 'କାଣ୍ଟୋ'ମାନଙ୍କ ତଳେ ଥିବା ବସ୍ତୁସ୍ତରର ପାଣ୍ଡିତ୍ୟ । ଏ ସବୁ କବିତା କୌଣସି ଶ୍ରେଣୀର ହିଁ ନୁହନ୍ତି ଓ ଆଲୋଚନା ବାହାରର ଦ୍ରବ୍ୟ ।" (ମାୟାଧର ମାନସିଂହ, 'ଓଡ଼ିଆ ସାହିତ୍ୟର ଇତିହାସ', ଗ୍ରନ୍ଥମନ୍ଦିର, କଟକ, ୧୯୬୭, ପୃ. ୩୮୫—୩୮୮)

ଗୁରୁପ୍ରସାଦଙ୍କ କାବ୍ୟ-କୃତି ଯେ ଓଡ଼ିଆ ସାହିତ୍ୟରେ 'ନୂତନ' ଓ ଅନନ୍ୟ, ସେ ସମ୍ପର୍କରେ 'ନୂତନ କବିତା'ର ପ୍ରାରମ୍ଭରେ ଯତୀନ୍ଦ୍ର ମୋହନ

ମହାନ୍ତିଙ୍କ 'ଭୂମିକା'ଠାରୁ ଅଧିକ ନିର୍ଭରଯୋଗ୍ୟ ପ୍ରମାଣ-ପତ୍ର ହେଉଛି ବୋଧେ ମାନସିଂହଙ୍କର ଏପ୍ରକାର ବ୍ୟଙ୍ଗପୂର୍ଣ୍ଣ, ଉତ୍କ୍ଷିପ୍ତ ସମାଲୋଚନା । ମାନସିଂହଙ୍କୁ ଦୋଷ ନ ଦେଇ ବରଂ ଏହା ବୁଝାଯିବା ଉଚିତ ହେବ ଯେ ମାନସିଂ ଯେଉଁ ପ୍ରକାର କାବ୍ୟ ରୁଚି, କାବ୍ୟ-ପ୍ରଣାଳୀ ଓ କାବ୍ୟ-ଆବେଗର ପ୍ରତିନିଧିତ୍ୱ କରନ୍ତି, ତାକୁ ନେଇ ଗୁରୁପ୍ରସାଦଙ୍କ କବିତା ଉପଲବ୍ଧି କରିହେବ ନାହିଁ । କେବଳ ଓଡ଼ିଆ ସାହିତ୍ୟରେ କାହିଁକି, ଅନ୍ୟାନ୍ୟ ଦେଶର ସାହିତ୍ୟରେ ମଧ୍ୟ ଜଣେ ପ୍ରକୃତରେ 'ନୂତନ' କବି ପ୍ରଥମେ ଏଭଳି ଅନୁଦାର ସମାଲୋଚନାର ଶରବ୍ୟ ହେବାର ଦୃଷ୍ଟାନ୍ତ ପ୍ରଚୁର; ଯଥା :— ଇଂରେଜୀ ସାହିତ୍ୟରେ ଓ୍ୱାର୍ଡ଼ସଓ୍ୱାର୍ଥ ଓ ଇଲିୟଟ, ଯୁକ୍ତରାଷ୍ଟ୍ର ଆମେରିକାରେ ହ୍ୱିଟ୍‌ମ୍ୟାନ, ଫ୍ରାନ୍ସରେ ବଦ୍‌ଲେୟାର୍ ଇତ୍ୟାଦି ।

ଅବଶ୍ୟ ଅଜାଣତରେ ମାନସିଂ ଗୁରୁପ୍ରସାଦଙ୍କ କବିତାର ନୂତନତ୍ୱ ସ୍ୱୀକାର କରି ନେଇଛନ୍ତି ! : "ଏ ସବୁ କବିତା କୌଣସି ଶ୍ରେଣୀର ନୁହନ୍ତି ।" ବାସ୍ତବିକ, ସେଗୁଡ଼ିକୁ କୌଣସି ଶ୍ରେଣୀଭୁକ୍ତ କରିହେବ ନାହିଁ ଏବଂ ସ୍ୱାଧୀନତୋତ୍ତର ଆଧୁନିକ ଓଡ଼ିଆ କାବ୍ୟ-ଇତିହାସରେ ପରିଦୃଷ୍ଟ ଗୋଟିଏ ଗଭୀର ବ୍ୟଙ୍ଗପୂର୍ଣ୍ଣ ଘଟଣା ଏହି ଯେ ମାନସିଂ ଯେଉଁ କବିତାକୁ 'ଆଲୋଚନା ବାହାରର ଦ୍ରବ୍ୟ' କହି ଉପେକ୍ଷା କରିଥିଲେ, ତାରି ସମ୍ପର୍କରେ ବୋଧେ (କବିତା ସଂଖ୍ୟା ଦୃଷ୍ଟିରୁ, ଆନୁପାତିକ ଭାବରେ) ସବୁଠୁଁ ବେଶୀ ଆଲୋଚନା କରାଯାଇଛି; ଓ ଯତୀନ୍ଦ୍ର ମୋହନ ମହାନ୍ତି ଗୁରୁପ୍ରସାଦଙ୍କ କବିତାରେ ଯେଉଁ ନୂତନତ୍ୱର ସନ୍ଧାନ ପାଇଥିଲେ, ପରବର୍ତ୍ତୀ ଅଧିକାଂଶ କବି ଓ ସମାଲୋଚକ ସେ ମତକୁ ଗ୍ରହଣ କରିନେଇଛନ୍ତି । ତେବେ, ଏକାଧିକ ଆଲୋଚକଙ୍କ ଦ୍ୱାରା ବିଭିନ୍ନ ଦୃଷ୍ଟିକୋଣରୁ ଗୁରୁପ୍ରସାଦଙ୍କ କାବ୍ୟକୃତିର ସମାଲୋଚନା ତଥା ମୂଲ୍ୟାୟନ ଦିଗରେ ଏ ସଂକଳନ ପ୍ରଥମ ଉଦ୍ୟମ । ଏଥିରେ ସଂକଳିତ ସମସ୍ତ ଲେଖା ନୂଆ ଓ ଏଇ ସଂକଳନ ପାଇଁ ହିଁ ଲିଖିତ । ସହଯୋଗ କରିଥିବା ଆଲୋଚକମାନଙ୍କୁ ଏ ଅବସରରେ ଆମେ ଆନ୍ତରିକ କୃତଜ୍ଞତା ଅର୍ପଣ କରୁଛୁ । ଏ ସଂକଳନର ଆଉ ଏକ ବିଶିଷ୍ଟ ବିଷୟ ହେଉଛି, ଗୁରୁପ୍ରସାଦଙ୍କ

ସହ ସର୍ବପ୍ରଥମ ଆନୁଷ୍ଠାନିକ ସାକ୍ଷାତ୍କାରର ପ୍ରକାଶନ, ଏବଂ ଏଥିପାଇଁ ଆମେ ଗୁରୁପ୍ରସାଦଙ୍କ ନିକଟରେ ଋଣୀ । ବିଶ୍ୱାସ, ଏ ସାକ୍ଷାତ୍କାରରେ ତାଙ୍କ କବିତା ସମ୍ପର୍କରେ ଉନ୍ମୋଚିତ ତଥ୍ୟସମୂହ ତାଙ୍କ କାବ୍ୟ-କୃତିର ସାମଗ୍ରିକ ମୂଲ୍ୟାଙ୍କନ କ୍ଷେତ୍ରରେ ନୂତନ ଦିଗନ୍ତର ସନ୍ଧାନ ଦେବାରେ ପ୍ରଭୂତ ସାହାଯ୍ୟ କରିବ । 'ସମୁଦ୍ରସ୍ନାନ' ସଂକଳିତ ହେଲାପରେ ବିଭିନ୍ନ ପତ୍ରିକାରେ ପ୍ରକାଶିତ ଗୁରୁପ୍ରସାଦଙ୍କ ତିନୋଟି କବିତାର ଏ ସଂକଳନରେ ପୁନଃମୁଦ୍ରଣ ତା'ର ଆଉ ଏକ ଆକର୍ଷଣ, ଏବଂ ସେଗୁଡ଼ିକୁ ଏ ସଂକଳନରେ ସନ୍ନିବେଶିତ କରିବାକୁ ଅନୁମତି ପ୍ରଦାନ କରିଥିବାରୁ ଆମେ ତାଙ୍କ ନିକଟରେ କୃତଜ୍ଞ ।

ସଂକଳନର ଲେଖାଗୁଡ଼ିକୁ ତିନିଭାଗରେ ବିଭକ୍ତ କରାଯାଇଛି । ପ୍ରଥମ ବିଭାଗ 'ପ୍ରବନ୍ଧ, ଆଲୋଚନା ଓ ସମାଲୋଚନା'ରେ ଆଲୋଚକଗଣ ଗୁରୁପ୍ରସାଦଙ୍କ କାବ୍ୟକୃତିର ବିଭିନ୍ନ ବିଭବ ସମ୍ପର୍କରେ ନୂତନଦୃଷ୍ଟିକୋଣରୁ ଆଲୋକପାତ କରିବାକୁ ନିଷ୍ଠାପର ଉଦ୍ୟମ କରିଛନ୍ତି । ଏ ବିଭାଗର ପ୍ରଥମ ପ୍ରବନ୍ଧରେ ଗୁରୁପ୍ରସାଦଙ୍କ କବିତାର ଏକ ମୂଳଭାବସତ୍ତା ପ୍ରତି ଲକ୍ଷ୍ୟ କରି କୃଷ୍ଣଚରଣ ସାହୁ ଲେଖିଛନ୍ତି : "ଆକାଶ ବାଲିର ବିବାଦ, ପ୍ରେମ ଓ ସମାଧାନ ଏହାରି ମଧ୍ୟଦେଇ ତାଙ୍କ କବିତା ରୂପପାଏ ଓ ତାଙ୍କ କବିତାରେ ଆକାଶ ଓ ବାଲିର ବାରମ୍ବାର ଆବୃତ୍ତି ଶୁଣାଯାଏ । ତାଙ୍କ ଆକାଶରୁ ସେ ବାଲିପରି ନଷ୍ଟ ଦେହର କବିତାକୁ ଶୁଣିଛନ୍ତି । ପ୍ରିୟାକୁ କେନ୍ଦ୍ରରେ ରଖି ସେ ଆକାଶ ଓ ବାଲିର ଅର୍ଥାତ୍ କଳ୍ପନା ଓ ବାସ୍ତବତାର ସମନ୍ୱୟକରିବାକୁ ଚେଷ୍ଟା କରିଛନ୍ତି" (ପୃ. ୧୪-୧୫) । କୃଷ୍ଣଚରଣ ସାହୁଙ୍କ ମୂଲ୍ୟବାନ୍ ପ୍ରବନ୍ଧର ଆଉ ଏକ ଦିଗ ହେଲା ସେ ଭାରତୀୟ ସାହିତ୍ୟ, ବିଶେଷତଃ ହିନ୍ଦୀ ସାହିତ୍ୟର ପୃଷ୍ଠଭୂମିରେ ଗୁରୁପ୍ରସାଦଙ୍କ କବିତାର ବିଚାର (ଉଭୟ ଭାବସତ୍ତା ଓ ଆଙ୍ଗିକ ଦୃଷ୍ଟିରୁ) କରିବାକୁ ଯାଇଛନ୍ତି । "ରୋମାଣ୍ଟିକ୍ ଭାବନାପ୍ରତି ବିମୋହିତାର କାରଣ ଆକସ୍ମିକ ନୁହେଁ, ଏହା ତତ୍କାଳୀନ ଐତିହାସିକ ସାମାଜିକ ପରିସ୍ଥିତିର ପରିଣାମ । ସ୍ୱାଧୀନତା ପ୍ରାପ୍ତିର କିଛି ପୂର୍ବରୁ ସମସ୍ତ ଭାରତବର୍ଷର କବିମାନେ କବିତାକୁ ସୁନ୍ଦର ଶବ୍ଦ ଓ ରୂପଚିତ୍ରର ସଂଯୋଜନାକୁ ପରିତ୍ୟାଗ କରିବାକୁ ଦୃଢ଼ବଦ୍ଧ ହୋଇଥିଲେ । ଦେଶର ସାମାଜିକ ଓ ଐତିହାସିକ ସ୍ଥିତି

କବିତାର ଶୋଧାର୍ଥୀଙ୍କ ଉପର ନିରର୍ଥକତା ସୃଷ୍ଟି କରି ଦେଇଥିଲା । ସେମାନେ କଳନାରେ ଭାଇ ନ ଯାଇ ସମସ୍ୟାର ସମ୍ମୁଖୀନ ହେବା ପାଇଁ ଇଚ୍ଛା କରିଥିଲେ ।'' (ପୃ ୧୫) । 'ଅସ୍ମିତାର ଅନୁସନ୍ଧାନ' ('ସର୍ଚ୍ଚ ଅଫ୍ ଆଇଡେଣ୍ଟିଟି') ଓ ଆଧୁନିକ ମନୁଷ୍ୟ ପକ୍ଷରେ ସମାଜର ଦୁର୍ବହତା— ଗୁରୁପ୍ରସାଦଙ୍କ କବିତାର ଏଇ ଅନ୍ୟ ଦୁଇ ପ୍ରଧାନ ବିଷୟ ମଧ୍ୟ ସମସାମୟିକ ହିନ୍ଦୀ କବି ସର୍ବେଶ୍ୱର ଦୟାଲ୍ ଓ କେଦାର ସିଂ ପ୍ରଭୃତିଙ୍କ କବିତାରେ ପରିଦୃଷ୍ଟ । ଭାରତୀୟ ଜୀବନ ଓ ସାହିତ୍ୟର ପରିପ୍ରେକ୍ଷୀରେ ଗୁରୁପ୍ରସାଦଙ୍କ କାବ୍ୟ-କୃତିର ବିଚାର ଉପରେ କୃଷ୍ଣଚରଣ ସାହୁଙ୍କ ଏ ପ୍ରବନ୍ଧରେ ଗୁରୁତ୍ୱ ଆରୋପ କରାଯାଇଥିବା ଦୃଷ୍ଟିରୁ ଇଲିଅଟ୍ଙ୍କ ସହ ଗୁରୁପ୍ରସାଦଙ୍କ ସଂପର୍କ ବିଷୟରେ କିଛି ପୁନର୍ଚିନ୍ତନ ('ରି-ଥିଙ୍କିଙ୍ଗ୍') କରାଯାଇପାରେ ।

'ନୂତନକବିତା'ର 'ଭୂମିକା'ରେ ପୂର୍ବବର୍ତ୍ତୀ ଓଡ଼ିଆ କବିତାଠାରୁ ଗୁରୁପ୍ରସାଦଙ୍କ କବିତା କଉକଉଁଥିରେ ଭିନ୍ନ ଓ 'ନୂତନ', ତା'ବୁଝାଇବାପାଇଁ ଯତୀନ୍ଦ୍ରମୋହନ ମହାନ୍ତି ପ୍ରଥମେ ଇଲିଅଟ୍ଙ୍କ ଏକ ମୁଖ୍ୟ କାବ୍ୟ-ତତ୍ତ୍ୱ 'ଇଉନିଫିକେସନ୍ ଅଫ୍ ସେନସିବିଲିଟି' 'ଡିସୋସିଏସନ୍ ଅବ୍ ସେନ୍‌ସିବିଲିଟି'ର ଅବତାରଣାକଲେ :—

> ଏଲିଅଟ୍‌ଙ୍କର "Unification of sensibility, ଓ "dissociation of sensibility' ମଧ୍ୟରେ ଯେତିକି ପ୍ରଭେଦ 'ନୂତନ କବିତା' ଓ ଆଜିର ଓଡ଼ିଆ କବିତା ମଧ୍ୟରେ ଠିକ୍ ସେତିକି ପ୍ରଭେଦ । ଗୋଟିକୁ ଯଦି ପରିତ୍ୟାଗର କବିତା କୁହାଯିବ, ଅନ୍ୟଟି ସମନ୍ୱୟର କବିତା । ('ନୂତନ କବିତା', ଜନଶକ୍ତି ପୁସ୍ତକାଳୟ, କଟକ, ୧୯୬୨, 'ଭୂମିକା', ପୃ. ।/ )

ଆଜି ଯେତେବେଳେ 'ଡିସୋସିଏସନ୍ ଅଫ୍ ସେନ୍‌ସିବିଲିଟି' ତତ୍ତ୍ୱର ସତ୍ୟତା ଓ କାର୍ଯ୍ୟକାରିତା ସାହିତ୍ୟ-ସମାଲୋଚନା ଜଗତରେ ଏକ ଗୁରୁତ୍ୱପୂର୍ଣ୍ଣ ବିବାଦମାନ ବିଷୟ, ଏପରିକି କେତେକସମାଲୋଚକ ଯେତେବେଳେ ଏହାକୁ ଏକ ଦରକାରି ଅପପ୍ରଚାର ବୋଲି ଅଭିହିତ କରି ସାରିଲେଣି; ବିଶେଷତଃ ଯେତେବେଳେ ନିଜେ ଇଲିଅଟ୍ ତାଙ୍କ ଅଧିକାଂଶ କାବ୍ୟ-ତତ୍ତ୍ୱକୁ ତାଙ୍କ ନିଜ 'ପ୍ରାଇଭେଟ୍ ପୋଏଟ୍ରି ୱାର୍କସପ୍'ର 'ବାଇ-ପ୍ରଡକଟ୍' ( Bye-product )

ବୋଲି ଅଭିହିତ କରି ସାରିଲେଣି ●, 'ଡିସୋସିଏସନ୍ ଅଫ୍ ସେନସିବିଲିଟି' ତତ୍ତ୍ୱକୁ ନେଇ ଗୁରୁପ୍ରସାଦଙ୍କ କବିତାର 'ନୂତନତ୍ୱ' ଆଉ ଏତେ ନିଶ୍ଚିତତାର ସହିତ ପ୍ରମାଣ କରିହେବ ନାହିଁ । ଫ୍ରାଙ୍କ୍ କର୍ମୋଡ୍ 'ଡିସୋସିଏସନ୍ ଅବ୍ ସେନସିବିଲିଟି' ସଂପର୍କରେ ଯାହା କହିଛନ୍ତି ତାହା ଏଠାରେ ଅତ୍ୟନ୍ତ ପ୍ରାସଙ୍ଗିକ ଓ ପ୍ରଣିଧାନଯୋଗ୍ୟ :

> At its worst, it is merely a way of saying which poets one likes, and draping history over them. At its best it is an interesting primitivism, looking for an unmodern virtue.........The most deplorable consequence of the doctrine is that the periods and poets chosen to illustrate it are bound to receive perverse treatment, you must misrepresent them if you propose to make them justify a false theory. If the theory helps to produce good poetry ( as it did ) this is not worth complaining about, provided that it dies when this work is accomplished. But this theory shows every sign of surviving, and it is therefore a matter of importance to show how it has distorted Donne and Milton, the two poets most affeeted by it. ★

'ଡିସୋସିଏସନ୍ ଅବ୍ ସେନ୍‌ସିବିଲିଟି' ତତ୍ତ୍ୱର ଅସାରତା ସ୍ୱୀକୃତ ହୋଇଯାଲେ ପରେ ବି ଇଲିଅଟ୍‌ଙ୍କ କବିତାର ଦୀପ୍ତି ଅମ୍ଳାନ ରହିଛି, ଓ ସେହିପରି ଗୁରୁପ୍ରସାଦଙ୍କ କାବ୍ୟକୃତିର 'ନୂତନତ୍ୱ' ମଧ୍ୟ କୌଣସି ସାହିତ୍ୟିକ ତତ୍ତ୍ୱର ଆଶା-ବାଡ଼ି ବିନା ନିଜ ଗୋଡ଼ରେ ଛିଡ଼ା ହୋଇ ପାରିବା ଉଚିତ । ତଥାପି,

---

● T. S. Eliot, "The Frontiers of Criticism', 1956.

★ Frank Kermode, *Romantic Image*, London, Routledge and Kegan Paul, Third Impression, 1966, p. 146.

ଯଦି 'ନୂତନ' କବିତା ସୃଷ୍ଟି ପାଇଁ ଆମ୍ଭେମାନେ ଗୁରୁପ୍ରସାଦଙ୍କ ନିକଟରେ ଋଣୀ, ସେ କବିତା ପାଇଁ ସ୍ୱୀକୃତି ଓ ସମ୍ମାନ ହାସଲ କରାଇବା ଦିଗରେ ଯତୀନ୍ଦ୍ର ମୋହନ ମହାନ୍ତିଙ୍କର ସାହସିକ ଓ ମୂଲ୍ୟବାନ ପ୍ରବନ୍ଧଗୁଡ଼ିକର ଅନସ୍ୱୀକାର୍ଯ୍ୟ ଭୂମିକା ପାଇଁ ତାଙ୍କ ନିକଟରେ ମଧ୍ୟ ଆମ୍ଭେମାନେ କୃତଜ୍ଞ ।

ଗୁରୁପ୍ରସାଦଙ୍କ କବିତା ପାଇଁ ପ୍ରତିଷ୍ଠା ଆଣିବା ସକାଶେ ଇଲିୟଟଙ୍କ ତତ୍ତ୍ୱର ଅବତାରଣାର ଗୋଟିଏଅତି ଦୁର୍ଭାଗ୍ୟଜନକ ଆନୁଷଙ୍ଗିକ ପରିଣତି ହୋଇଛି; କେତେକ ପରବର୍ତ୍ତୀ ସମାଲୋଚକଂକର ଏପରିଏକ ଧାରଣା ସୃଷ୍ଟି ଯେ ଗୁରୁ-ପ୍ରସାଦଂକ ଅଧିକାଂଶ କବିତା ଇଲିୟଟ୍‌ଂକ ତଦନୁରୂପ କବିତାମାନଂକର ଛାୟା ବା ପ୍ରଭାବରେ ଲିଖିତ । ଏହି ଧାରଣାର ବଶବର୍ତ୍ତୀ ହୋଇ କିଛି ବର୍ଷ ତଳେ ଜଣେ ଆଲୋଚକ ପଚାରିଥିଲେ : "ସ୍ଥୂଳତଃ 'ସମୁଦ୍ରସ୍ନାନ'କୁ 'ଚୌର୍ଯ୍ୟ ସମୁଦ୍ରସ୍ନାନ' ବୋଲି କହିବା ଅସଙ୍ଗତ ହେବ ନାହିଁ । ଏ ଭଳି ଆଦର୍ଶ ସୃଷ୍ଟି କରିବା କଣ ଆମର ଧର୍ମ ?" ['ଉତ୍କଳ ସାହିତ୍ୟ' ( ନୂତନ ପ୍ରସ୍ଥ-) ୨, ମାନସିଂହ ସ୍ମାରକ ସଂଖ୍ୟା ), ପ୍ରଥମ ବର୍ଷ—୧୯୭୪: ପୃ:୬୮] ଏ ସଂକଳନରେ ପତ୍ରସ୍ଥ 'ସାକ୍ଷାତକାର'ରେ ଗୁରୁପ୍ରସାଦଂକ ବକ୍ତବ୍ୟର କେତେକାଂଶ ଏ ପ୍ରସଂଗରେ ଉଦ୍ଧାର କରାଯାଇ ପାରେ : "ମୁଁ ଲେଖା ଆରମ୍ଭ କଲାବେଳେ ଇଲିୟଟ୍ ସମସ୍ତଂକ ମୁହଁରେ । ତେଣୁ ମୁଁ ବି ତାଂକ ଦ୍ୱାରା ନିଶ୍ଚୟ ଗଭୀରଭାବେ ପ୍ରଭାବିତ । ଏବଂ 'ଗୋବର ଗଣେଶ ' ଉପରେ 'ପ୍ରୁଫ୍ରକ୍'ର ଛାୟା ନିଶ୍ଚିତଭାବେ ପଡ଼ିଛି । କିନ୍ତୁ ସେତିକି । ଅନ୍ୟ କୌଣସି କବିତାଉପରେ ବୋଧହୁଏ ଇଲିୟଟ୍‌ଂକ ପ୍ରଭାବ ତ ନାହିଁ । ଆଉ,'କାଳପୁରୁଷ'। 'କାଳପୁରୁଷ' ଲେଖାହେବାର ଏକ ମଜା (ମାନେ 'ଇଣ୍ଟରେଷ୍ଟିଂ') ଇତିହାସ ଅଛି ।""ଇତିହାସ'ଟି ପାଠକମାନେ ନିଜେ ପାଠକରନ୍ତୁ ପୃ-୧୫୨-୧୫୩ରେ । ଏ'ଇତିହାସ'ର ପରିପ୍ରେକ୍ଷୀରେ 'କାଳପୁରୁଷ' ତଥା ତା' ସଂପର୍କିତ ପରସ୍ପର-ବିରୋଧୀମତଗୁଡ଼ିକ ବିଷୟରେ ପୁନର୍ଚିନ୍ତନ ଆବଶ୍ୟକ । ଏହି ମତ-ବର୍ଣାଳୀର ଗୋଟିଏ ଉପାନ୍ତରେ ଅଛି 'କାଳପୁରୁଷ'କୁ ପ୍ରଥମେ ପ୍ରକାଶ କରିଥିବା 'ପ୍ରଜ୍ଞା'ର ୧୯୬୦ ଅଗଷ୍ଟ ସଂଖ୍ୟାର 'ସଂପାଦକୀୟ' : 'କାଳପୁରୁଷ' ଖାଣ୍ଟି ଓଡ଼ିଆ କବିତା ଓ ଏହାହିଁ ଏ କବିତାର ସବୁଠାରୁ ବଡ ପରିଚୟ ।......

ପଣ୍ଡିତ ନୀଳକଣ୍ଠ ଦାସଂକର 'କୋଣାର୍କ' ପରେ ଏପରି ଉତ୍କୃଷ୍ଟ ଓଡ଼ିଆ କବିତା ଆଉ ପ୍ରକାଶ ପାଇ ନାହିଁ ।'' ଏବଂ ଆଉ ଏକ ଉପାନ୍ତରେ ବିଦ୍ୟମାନ ଏ ସଂକଳନରେ ପ୍ରକାଶିତ ତାରିଣୀ ଚରଣ ଦାସଙ୍କର ମତ : "ମନେହୁଏ 'କାଳପୁରୁଷ' 'ଓ୍ଵେଷ୍ଟଲେଣ୍ଡ'ର ଏକ ଓଡ଼ିଆ ଏଡ଼ିସନ ମାତ୍ର । ଏଥିରେ Something new କିମ୍ବା Differentର ସ୍ଵର ଅତ୍ୟନ୍ତ କ୍ଷୀଣ" (ପୃ ୪୧)ଓ ବିନୋଦବିହାରୀ ପଣ୍ଡାଙ୍କର ମନ୍ତବ୍ୟ : 'ନିଜ କବିତାର ଅଶ୍ଵକୁ ଦୋଡ଼ାଇବା ପାଇଁ 'ଓ୍ଵେଷ୍ଟଲ୍ୟାଣ୍ଡ'ର ଛାଞ୍ଚାକୁ ଆମଦାନୀ କରିବାର ପ୍ରଯତ୍ନଟା ନିହାତି ସୁସ୍ପଷ୍ଟ ଜଣାଯାଉଛି ।'' (ପୃ. ୪୮) । ଏହାସାଙ୍ଗକୁ ପୁଣି ଅଛି 'ସାକ୍ଷାତକାର'ରେ ଗୁରୁପ୍ରସାଦଙ୍କର ନିଜର ବକ୍ତବ୍ୟ : '' 'କାଳପୁରୁଷ'କୁ ସେତେବେଳେ ଯେଉଁମାନେ କହୁଥିଲେ It's a Cuttacki edition of 'The WasteLand' ସେମାନେ ବିଶେଷକରି ଭୁଲ୍ କହୁନଥିଲେ' ପୃ.୧୬୦

ଗୁରୁପ୍ରସାଦଙ୍କୁ ଜଣେ 'ମେଜର ପୋଏଟ୍' କହିବାକୁ ତାରିଣୀ ଚରଣ ଦାସ କୁଣ୍ଠାବୋଧକରିଥିଲେ ବି ତାଙ୍କ କବିତାରେ 'ବଳିଷ୍ଠ ସଂପ୍ରେଷଣ' ଅଛିବୋଲି କହି ଲେଖିଛନ୍ତି : ତାଙ୍କ କାବ୍ୟପ୍ରୟୋଗ ସଚ୍ଚି ରାଉତରାୟଂକ ପ୍ରଭାବରୁ ଓଡ଼ିଆ କବିତାକୁ ମୁକ୍ତକରିଛି ଏବଂ ନୂତନ କବିଗଣଂକୁ ସୃଜକ୍ଷମ କରିବାରେ ପ୍ରେରଣା ଦେଇଛି ।' (ପୃ. ୪୬) ଶରତ ଚନ୍ଦ୍ର ଶତପଥୀଂକ ପ୍ରବନ୍ଧ ଗୁରୁପ୍ରସାଦଂକ ସନେଟ୍ ସମ୍ପର୍କରେ ବୋଧହୁଏ ପ୍ରଥମ ପୁଙ୍ଖାନୁପୁଙ୍ଖ ଆଲୋଚନା । କୁମୁଦଚନ୍ଦ୍ର ଦାଶଂକ ମତରେ 'ଗୁରୁପ୍ରସାଦଂକ ଜୀବନ-ଜିଜ୍ଞାସା ଘୋର ନୈରାଶ୍ୟରକଥା କହୁଥାଏ ।' ସତ୍ୟଶଂକର ମିଶ୍ର ରୂପକଳ୍ପ ପ୍ରୟୋଗରେ ଗୁରୁପ୍ରସାଦଂକ ମୌଳିକତା ଓ ଗୋବିନ୍ଦଚଂଦ୍ର ନାୟକ ତାଂକର କାବ୍ୟ-ଶୈଳୀର ବୈଶିଷ୍ଟ୍ୟ ସମ୍ପର୍କରେ ଆଲୋଚନା କରିଛନ୍ତି ।

ସଂକଳନର ଦ୍ଵିତୀୟ ବିଭାଗ ''ଗୁରୁପ୍ରସାଦଂକ କବିତା ଓ ମୁଁ''ରେ ସ୍ଵକୀୟ, ବ୍ୟକ୍ତିଗତ ଦୃଷ୍ଟିକୋଣରୁ ଗୁରୁପ୍ରସାଦଂକ କବିତା ପ୍ରତି ନିଜର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି ଛଅଜଣ ସାଧନାରତ କବି : ବଂଶୀଧର ଷଡ଼ଙ୍ଗୀ, ପ୍ରହରାଜ ସତ୍ୟନାରାୟଣ ନଂନ୍ଦ, ନିତ୍ୟାନନ୍ଦ ପତି, ପ୍ରଫୁଲ୍ଲ କୁମାର ତ୍ରିପାଠୀ ନୀଳାଦ୍ରି ଭୂଷଣ ହରିଚଂଦନ ଓ ଶତ୍ରୁଘ୍ନ ପାଣ୍ଡବ ।

ଗୁରୁପ୍ରସାଦଂକ ପାଞ୍ଚୋଟି ସୁପରିଚିତ କବିତାର ବିଚାର ତଥା ଅନୁଶୀଳନ ସଂକଳନର ତୃତୀୟ ବିଭାଗରେ କରିଛନ୍ତି ରେଖା ମହାନ୍ତି, ସଂଗ୍ନନ ମହାନ୍ତି, ପ୍ରମୋଦ ମହାନ୍ତି, ସୌମ୍ୟେନ୍ଦ୍ର ବାରିକ ଓ ବିଜୟ ଚୌଧୁରୀ । ବିଶ୍ଵାସ, ଗୁରୁପ୍ରସାଦଂକ କାବ୍ୟ-କୃତିର ନୂତନତ୍ଵ ଓ ଅନନ୍ୟତାର ପୁନର୍ମୂଲ୍ୟାୟନ ଦିଗରେ ଏ ସଂକଳନ ସହାୟକ ହେବ । — ପ୍ରଫୁଲ୍ଲ କୁମାର ଜଗଦେବ

# ସମୁଦ୍ରର ସ୍ନାନ ଓ କଣ୍ଠ ଗୁରୁପ୍ରସାଦ

## କୃଷ୍ଣଚରଣ ସାହୁ

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଅର୍ଥାତ୍ ବିଗତ ପଚିଶ ବର୍ଷ ମଧ୍ୟରେ ଯେଉଁମାନେ ସମୁଦ୍ରରେ ସ୍ନାନ କରୁଥିଲେ, ସେମାନେ ସମସ୍ତେ ପୁଣ୍ୟ ଅର୍ଜନ କରିବା ପାଇଁ ହିଁ ସମୁଦ୍ରରେ ସ୍ନାନ କରିଥିଲେ । କିନ୍ତୁ ଯେତେବେଳେ ଗୁରୁବାବୁ 'ସମୁଦ୍ର ସ୍ନାନ' କଲେ ସେତେବେଳେ ସେ ଦେଖିଲେ ଯେ ପୁଣ୍ୟ ପରିବର୍ତ୍ତେ ତାଙ୍କ ଦେହରେ ଥିଲା ଖାଲି ବାଲିର ସଂସାର । ସମୁଦ୍ର ସ୍ନାନ ସାରି ଆଖି ଖୋଲିବା ପରେ ଆଖି ଆଗରେ ଦେଖିଲେ ଦିଗନ୍ତ-ବିସ୍ତାରୀ ଆକାଶ, ବାଲି ଓ ଆକାଶ ପୁଣି; ଆକାଶ ଓ ବାଲି ମଧ୍ୟରେ ଯେ ଏତେ ବିଭ୍ରାଟ ହୋଇଗଲେ ଯେ ଜନ ସମୁଦ୍ରରେ ସ୍ନାନ କରିବାବେଳକୁ ତାଙ୍କୁ କେବଳ ଏହି ଦୁଇଟି ପଦାର୍ଥ ଦେଖିବାକୁ ମିଳୁଥିଲା । ସେଥିପାଇଁ ତାଙ୍କ କବିତାରେ ତାଙ୍କ ଜୀବନର ଅନୁଭୂତି ପ୍ରକାଶ ପାଇଲା, ବାଲି ଓ ଆକାଶର ବିବାଦ ମଧ୍ୟରେ । ବାଲି ଓ ଆକାଶ ବିଭିନ୍ନରୂପ ଓ ରଙ୍ଗନେଇ, ବିଭିନ୍ନ ଗତି ଓ ପ୍ରକୃତି ଧରି ତାଙ୍କ କବିତାରେ ଆତ୍ମ ପ୍ରକାଶ କଲା ଓ ତାଙ୍କ କବିତା ହେଲା ବାଲି ଓ ଆକାଶର କବିତା । ସେଥିପାଇଁ ସେ ଲେଖିଛନ୍ତି :—

"ଆଜି ତେଣୁ ଆକାଶର ବାଦ
ଆଉ ଏ ବାଲିର ବିବାଦ ଭିତରେ
ମୁଁ ତୁମକୁ ପ୍ରେମ କରେ,
ଶତ ଲେଖେ, ତୁମର ମୁଁ
ସମାଧାନ
ତୁମର ମୁଁ ସମନ୍ୱୟ କରେ ।"

କବିଙ୍କର ଏହି ସଙ୍କେତ ମଧ୍ୟରୁ ତାଙ୍କ ପରିବର୍ତ୍ତିତ ମନ ତଥା ରଚନାତ୍ମକ ପ୍ରବୃତ୍ତିର ସୂଚନା ମିଳେ । ଆକାଶ ଓ ବାଲିର ବିବାଦ, ପ୍ରେମ ଓ ସମାଧାନ ଏହାଙ୍କ ମଧ୍ୟଦେଇ ତାଙ୍କ କବିତା ରୂପ ପାଏ ଓ ତାଙ୍କ କବିତାରେ ଆକାଶ ଓ ବାଲିର ବାରମ୍ବାର ଆବୃତ୍ତି ଶୁଣାଯାଏ । ସେ ଯେ କେବଳ ବାଲି ଓ ବାଲିଚରର ବାରମ୍ବାର ଆବୃତ୍ତି କରି ତାଙ୍କ କବିତାକୁ ଗୀତାତ୍ମକ ରୂପପ୍ରଦାନ କରିଛନ୍ତି ତାହା ନୁହେଁ, ବାଲିର ଏହି କ୍ଷୁଦ୍ର କ୍ଷୁଦ୍ର ଆକୃତି ମଧ୍ୟରେ ସେ ଜୀବନର କ୍ଷୁଦ୍ର କ୍ଷୁଦ୍ର ନିରର୍ଥକ, ସ୍ନାୟୁରୋଗ, ଯନ୍ତ୍ରଣା ଝାଳ ଓ ତାପ ପୁଣି ବିବର୍ଣ୍ଣ ରୋଗଗ୍ରସ୍ତ ଶରୀରର ସ୍ତବ୍ଧତା ଓ କ୍ଳାନ୍ତି ଅନୁଭବ କରିଥିଲେ । ସେହିପରି ଆକାଶର ଆବୃତ୍ତି ମଧ୍ୟରେ ସେ ନିଜକୁ କଳାଧଳା ବିଜୁଳିଝଲସି ଆକାଶ, ସୂର୍ଯ୍ୟାସ୍ତର ଶୋଭାଯୁକ୍ତ ଆକାଶ ପୁଣି ଚନ୍ଦ୍ର ଓ ତାରାଖଚିତ ଆକାଶର କମନୀୟତାରୁ ମୁକ୍ତ କରି, ସେଥିରେ ନିଃସଙ୍ଗତା, ସ୍ତିମିତ ତାରାର ଲୁହ, ବନ୍ଧୁହୀନ, ଜ୍ୟୋତିହୀନ ଚେତନାର ସ୍ପର୍ଶ ପାଇଛନ୍ତି । ବହୁ ପ୍ରେମିକ ପ୍ରେମିକାଙ୍କୁ ଉଦ୍ଦୀପିତ କରୁଥିବା ଜହ୍ନ ଆଜି ହୋଇଛି ଆବଶ୍ୟକହୀନ କ୍ଳାନ୍ତ ଓ ବିବର୍ଣ୍ଣ । ପ୍ରଥମେ ଯେଉଁ ଆକାଶ ମିଳନ ଓ କଳ୍ପନାର ପ୍ରତୀକରୂପେ ନିରମ ଥିଲା, ସେହି ଆକାଶ ଆଜି ଇସ୍ପାତ ପରି ଠାଣ ହୋଇ ପୃଥିବୀର ସ୍ଥାବର ଶରୀର ପ୍ରତି ଆକୃଷ୍ଟ ହେଲା ଏବଂ ଏହି ପୃଥିବୀରେ ଥିବା ଜୀର୍ଣ୍ଣ ଦେହର ଶ୍ରେଷ୍ଠ ଶ୍ରେଷ୍ଠ ଭଙ୍ଗୀ ମଧ୍ୟରେ ନିଜକୁ ଆବଦ୍ଧ କରିଦେଲା । ଫଳରେ କବି ତାକୁ ଆକାଶର ରୋମାଣ୍ଟିକ ଭାବନାରୁ ଦୂରେଇ ବାସ୍ତବମୁଖୀ କଲେ । ସ୍ୱପ୍ନ ତ୍ୟାଗ କରି ସେ ଚେତନାଯୁକ୍ତ ହେଲେ । ଉପେନ୍ଦ୍ର ଭଞ୍ଜ, ରାଧାନାଥ, ମାନସିଂହ ଓ ସଚ୍ଚିରାଉତରାୟ ପ୍ରଭୃତି ରୋମାଣ୍ଟିକ କବିଙ୍କ କଳ୍ପନାଠାରୁ ସେ ନିଜକୁ ଅଲଗା କଲେ । ଆକାଶରୁ ତାରା ଖସି ଶୂନ୍ୟରେ ମିଳାଇଯିବା ପରି ପୂର୍ବୋକ୍ତ କବିସବୁଙ୍କ କଳ୍ପନାରଞ୍ଜିତ

ମନ ତାଙ୍କ ଆଖି ଆଗରୁ ଅପସାରିତ ହୋଇଗଲା । ତାଙ୍କ କବିତାରେ ଆକାଶ ପ୍ରଥମେ ସ୍ୱପ୍ନ, ରୂପ ଓ ସୌନ୍ଦର୍ଯ୍ୟର ପ୍ରତୀକ ଭଳି ଜଣାଯାଉଥିଲେ ହେଁ ପ୍ରକୃତରେ ଏହା କେବଳ ଅତୀତର ସ୍ମୃତି । ତାଙ୍କ ଆକାଶରୁ ସେ ବାଲି ପରି ନଷ୍ଟ ଦେହର କବିତା ହିଁ ଶୁଣିଛନ୍ତି । ପ୍ରିୟାକୁ କେନ୍ଦ୍ରରେ ରଖି ସେ ଆକାଶ ଓ ବାଲିର ଅର୍ଥାତ୍ କଳ୍ପନା ଓ ବାସ୍ତବତାର ସମନ୍ୱୟ କରିବାକୁ ଚେଷ୍ଟା କରିଛନ୍ତି ।

ରୋମାଣ୍ଟିକ ଭାବନାପ୍ରତି ବିମୋହତାର କାରଣ ଆକସ୍ମିକ ନୁହେଁ, ଏହା ତତ୍କାଳୀନ ଐତିହାସିକ ସାମାଜିକ ପରିସ୍ଥିତିର ପରିଣାମ । ସ୍ୱାଧୀନତା ପ୍ରାପ୍ତିର କିଛି ପୂର୍ବରୁ ସମସ୍ତ ଭାରତବର୍ଷରେ କବିମାନେ କବିତାରୁ ସୁନ୍ଦର ଶବ୍ଦ ଓ ରୂପଶିଳ୍ପର ସଂଯୋଜନାକୁ ପରିତ୍ୟାଗ କରିବାକୁ ଦୃଢ଼ବଦ୍ଧ ହୋଇଥିଲେ । ଦେଶର ସାମାଜିକ ଓ ଐତିହାସିକ ସ୍ଥିତି କବିତାର ରୋମାଣ୍ଟିକ ରୂପର ନିରର୍ଥକତା ସ୍ପଷ୍ଟ କରି ଦେଉଥିଲା । ସେମାନେ କଳ୍ପନାରେ ଭାସି ନ ଯାଇ ସମସ୍ୟାର ସମ୍ମୁଖୀନ ହେବାପାଇଁ ଇଚ୍ଛା କରୁଥିଲେ । ପ୍ରତ୍ୟେକ ଜିନିଷକୁ ତାର ନିଜ ନାଁରେ ଡାକିବା ପାଇଁ ସେମାନେ ଇଚ୍ଛା କଲେ । ଅର୍ଥାତ୍ କଳ୍ପନାକୁ ତ୍ୟାଗ କରି ସେମାନେ ଯେଉଁଠି ଆଗରୁ ହିନ୍ଦୀ କବି କେଦାରନାଥ ସିଂହଙ୍କ ଭାଷାରେ 'ପ୍ୟାର' ଲେଖୁଥିଲେ ସେଠି 'ସଡ଼କ' ଲେଖିବାକୁ ଆରମ୍ଭ କଲେ । ଯେଉଁ ଭାଷା ସେମାନଙ୍କ ହୃଦୟ ଭିତରୁ ନିଦ୍ରା ଦେଇ ପ୍ରକାଶ ପାଉଥିଲା ତାହା ଦାନ୍ତ ଓ ଜିଭର ଉର୍ଦ୍ଧ୍ୱ ସ୍ଥଳରୁ ପ୍ରକାଶ ପାଇବାକୁ ଲାଗିଲା । ସ୍ୱାଧୀନତା ପ୍ରାପ୍ତି ପରେ ଏହାର ବିଶେଷ ବିସ୍ତାର ହେଲା ଓ ଗୁରୁବାବୁ ହେଉଛନ୍ତି ବିଶେଷ ବିସ୍ତାର ପରେ ଜୀବନର ସମସ୍ୟାସବୁକୁ ସମସ୍ରୋତ ମଧ୍ୟରେ ଚାକଚକ୍ୟ ନ ଦେଇ ନୂଆ ଭାବେ ଦେଖିବାକୁ ଆରମ୍ଭ କଲେ । କବିର ଏହି ଦୃଷ୍ଟିକୋଣ

'କପୋତ କପୋତୀ', 'ପ୍ରିୟବାନ୍ଧବୀ' 'ଶରତ ଋତୁରେ ଜନ୍ମ', 'ସୁନାର ହରିଣୀ', 'ରାତି', 'ଅଳକାସାନ୍ୟାଲ', 'ଆଶିଷ କପୋତ ମୋର', 'ପିକ୍‌ନିକ୍', 'ଝୁଙ୍କିର ଖଗ' ଓ ଅନ୍ୟାନ୍ୟ କବିତାରେ ମଧ୍ୟ ଦେଖିବାକୁ ମିଳେ । ଏହିସବୁ କବିତାର ନାମକରଣ ଓ ଆଦ୍ୟଭାଗରେ ରୋମାଣ୍ଟିକ ଭାବନାର ଗନ୍ଧ ଥିଲେ ହେଁ ପରମୁହୂର୍ତ୍ତରେ ଏହା ଉଭେଇ ଯାଇ ତା' ସ୍ଥାନରେ ଦେଖାଦେଉଛି ଧୂସର ବାଲି ଓ ଅସ୍ତଗାମୀ ଜହ୍ନ ମଧ୍ୟରେ ପୃଥିବୀର ପ୍ରାଚୀନ ପ୍ରାଣ ପୁଣି ମରଣର ଆହ୍ୱାନ ।

ରୋମାଣ୍ଟିକ ଚେତନାରୁ ଦୂରେଇ ଯିବାପରେ କବି ନିଜ ମଧ୍ୟରେ ନିଜକୁ ପୁଣି ନିଜର ଅସ୍ତିତ୍ୱକୁ ଖୋଜିବାରେ ଲାଗିଛନ୍ତି । ଅସ୍ମିତାର ଅନୁସନ୍ଧାନ ମନୋବିଜ୍ଞାନରେ ଯାହାକୁ 'ସର୍ଚ୍ଚ ଅଫ୍ ଆଇଡେଣ୍ଟିଟି' କୁହାଯାଏ, ତାହାହିଁ ବିଭିନ୍ନଭାବେ ତାଙ୍କ କବିତାରେ ଆତ୍ମପ୍ରକାଶ କରିଛି । ଏହି ପର୍ଯ୍ୟାୟରେ ଆସେ କବିଙ୍କର 'ଗୋବର ଗଣେଶ', 'ହରେକୃଷ୍ଣ ଦାସ', 'ଅଙ୍କୁର ଜବାବ', 'କାଳପୁରୁଷ' ଓ ଅନ୍ୟାନ୍ୟ କବିତା । ଏଥିରେ କବି ନାଟକୀୟ ଢଙ୍ଗରେ ତୁମେ ଓ ମୁଁର ଆଳାପ ମଧ୍ୟରେ ନିଜକୁ ଅନୁସନ୍ଧାନ ଓ ଆବିଷ୍କାର କରିବାରେ ଲାଗିଛନ୍ତି । 'ମୁଁ' ଏଠି ସ୍ପଷ୍ଟ ହେଲେ ହେଁ 'ତୁମେ ସ୍ପଷ୍ଟ ନୁହେଁ । କବି ଏହାକୁ 'କପୋତ କପୋତୀ' 'ଗୋବର ଗଣେଶ' ପ୍ରଭୃତି କବିତାରେ ପ୍ରିୟା ବା ବାନ୍ଧବୀ ରୂପେ ଗ୍ରହଣ କରୁଥିଲେ ହେଁ କେତେକ କବିତାରେ ଏହାର ଅସ୍ପଷ୍ଟ ଛାଇ ଦେଖିଛନ୍ତି । 'କାଳପୁରୁଷ'ରେ ଏହାର ଅସ୍ପଷ୍ଟ ପଦଶବ୍ଦ ହିଁ ଶୁଣାଯାଉଛି ।

"ବାହାରେ କାହାର ଶବ୍ଦ ? ନୁହେଁ ନୁହେଁ କେହି ନୁହେଁ
ବର୍ଷା ଓ ମେଘର ଡାକ ଶବ୍ଦ ପବନର ।

ତୁମେ ଆସି ଛୁଡ଼ା ନୂଆ କେନ୍ଦ୍ର, ଖୋଜ ଆଲୁଅର
ମୁଁ ତୁମର ଦେହଆଡ଼ ଖୋଜିପିବ, ଖୋଜିପିବ ମନ୍ତ୍ର ମୋର,
ସ୍ଥିତି ମୋର, ସ୍ୱରକେନ୍ଦ୍ର ମୋର ଏ ଦେହର ।"

ଏହିସବୁ କବିତାରେ ଥିବା ଆଳାପର ଧ୍ୱନି ଆଧୁନିକ କବିତାର ଏକ ବଶିଷ୍ଟଶୈଳୀ ଅର୍ଥାତ୍ ନାଟକୀୟତାକୁ ପ୍ରକାଶ କରୁଥିଲେ ହେଁ ବେଳେବେଳେ ଏହା ମନ-ଚୈତନ୍ୟ ସମ୍ବାଦର ଭ୍ରମ ଉତ୍ପନ୍ନ କରେ । ମନ ଯେତେବେଳେ କୁହେ "ମୁଁ ପଢିଛି ଉପନ୍ୟାସ ମୁଁ ପଢ଼ିଛି ଇଂରାଜୀ ନାଟକ : ମୁଁ ଜାଣିଛି ଏ ରକ୍ତରେ ଶୋଇଥାଏ ଆଦିମ ଅସଭ୍ୟ" ସେତେବେଳେ ଚୈତନ୍ୟ ମନକୁ ଚେତାଇ ଦିଏ "ଭୁଲ ସବୁ, ଗଧ ତୁମେ : ବୋକା ତୁମେ ଓଲୁ ତୁମେ : ରୂପଶାର ଭେଳକି ତୁମର ।" ମନ ଉପରେ ଶର୍କପାଲ ଛେପ ଢୋକେ, ଓଣ୍ଠ ଶୁଖିଯାଏ । ଏହା ହେଉଛି ଏକ ମଧ୍ୟରେ ଦୁଇର ଆଳାପ । ମୁଁ ଯିଏ, ତୁମେ ସେଇ, ସେହି ହେଉଛି ପ୍ରେମିକ ସେହି ପୁଣି ପ୍ରେମିକା । ବେଦାନ୍ତର ତତ୍ତ୍ୱଦର୍ଶ ଏହା 'ମୁଁ'କୁ ଜାଣିବାର ଏକ ପ୍ରୟାସ । କବି ବିଭିନ୍ନ କବିତାରେ ଭିନ୍ନ ଭିନ୍ନ ରୂପରେ ଅସ୍ମିତାର ଅନୁସନ୍ଧାନ କରୁଥିବାବେଳେ 'କଟପାତ କଟପୋଷ୍ଟ'ରେ ଏହାକୁ ରାତିର ଅନ୍ଧାରରେ ଖୋଜନ୍ତି ସ୍ୱପ୍ନ ଓ ଇନ୍ଦ୍ରଜାଲ ଭିତରେ । ଯେଉଁଠି ଅନ୍ଧାର ନିର୍ବିବାଦରେ ନିଶବ୍ଦରେ ଜାକିଜୁକି ପୁଣି ଯୋଡ଼ସାଡ଼ ହୋଇ ଶୋଇ ପଡ଼ୁଛି । ନିଶବ୍ଦ ଚଇତ ରାସ୍ତାପରେ ରାସ୍ତା, ଗଳିପରେ ଗଳି ଭେଦ କରି କେତେବେଳେ ଘୋଡ଼ାଗାଡ଼ିରେ ଓ କେତେବେଳେ ଟ୍ୟାକ୍ସିରେ ଚଢ଼ି, ସାବୁନ୍, ବାସ୍ନାତେଲ, ଗୁଡ଼ାଖୁ, ଇଲେକ୍‌ଟ୍ରିକ ଆଲୁଅ ଓ ହାଇଦର ବଡ଼ର ସ୍ୱପ୍ନିଳ ଦୁନିଆ ଭିତରେ ଗାନ୍ଧୀ ଟୋପି ପିନ୍ଧି ରାସ୍ତାର ଭିଡ଼ ଠେଲି ଆଗକୁ ଚାଲିଛି । ରାତିର ଏହି ଅନ୍ଧାରରେ

ଭଦ୍ରତା, ଶିଷ୍ଟତା, ଗାନ୍ଧୀବାଦ, ସାମ୍ୟବାଦ ଓ ପ୍ରେମର ସୀମା ଲଙ୍ଘିଯାଇଛି । ସ୍ୱପ୍ନଚିତ୍ର ବା ଫିଲ୍ମର ପଟ୍ଟକଥା ଭଳି ଏହି କବିତାର ଦୃଶ୍ୟପଟରେ ଦୃଶ୍ୟର ଯେଉଁ ସଂଯୋଜନା ଦେଖିବାକୁ ମିଳେ ତା ହିନ୍ଦୀ କବି ମୁକ୍ତିବୋଧଙ୍କର 'ଅନ୍ଧାରେମେ' କବିତାର ଅନୁରୂପ । ଅନ୍ଧକାରମୟ ରାତିର ବାତାବରଣ ମଧ୍ୟରେ ଯେତେବେଳେ କବିତାର 'ମୁଁ' ନିଜକୁ ଆବିଷ୍କାର କରିବାକୁ ଇଚ୍ଛା କରେ ସେତେବେଳେ ସେହି ଅନ୍ଧାରରେ ତାକୁ ଏକ ମଶାଲ ଶୋଭାଯାତ୍ରା ଦେଖାଯାଏ । ଏହା ଏକ ମୃତ୍ୟୁଦଳର ଶୋଭାଯାତ୍ରା । ଆଗରେ ବ୍ୟାଣ୍ଡପାର୍ଟି ଓ ପଛରେ ସେହି ସହରର କେତେକ ପ୍ରତିଷ୍ଠିତ ପତ୍ରକାର, ଆଲୋଚକ, ବିଚାରକ, ଉଦୀୟମାନ କବି, ଉଦ୍ୟୋଗପତି, ବିଦ୍ୱାନ ଏବଂ କେତେଜଣ ମନ୍ତ୍ରୀ ମଧ୍ୟ । ସେମାନଙ୍କ ସାଙ୍ଗରେ ଗସ୍ତ କରି ଯାଉଛନ୍ତି ସେହି ସହରର ନାମଜାଦା । ଡକାୟତ କୁଖ୍ୟାତ ଉସ୍ତାଦ । ଫାସିଷ୍ଟମାନଙ୍କର ଏହି ଶୋଭାଯାତ୍ରା ମଧ୍ୟରୁ କବି 'ମୁଁ'କୁ ଆବିଷ୍କାର କରିବାପାଇଁ ଚାହୁଁଛନ୍ତି । ସେ ଦେଖାଇବାକୁ ଚାହୁଁଛନ୍ତି ଯେ ଯେଉଁମାନେ ଦିନରେ ବିଭିନ୍ନ ମୁଖା ପିନ୍ଧି ଜନମଙ୍ଗଳ କାର୍ଯ୍ୟରେ ରତ ଓ ପରସ୍ପରଠାରୁ ସ୍ୱତନ୍ତ୍ର ସେହିମାନେ ହିଁ ରାତିର ଅନ୍ଧକାର ମଧ୍ୟରେ ଏକତ୍ର ହୋଇଯାଆନ୍ତି । ଭେଦଭାବର ଚିହ୍ନ ରହେନାହିଁ । ସବୁ ସୀମାରେଖା ଲୋପ ପାଇ ଏକାକାର ହୋଇଯାଏ । ସଂସାରର କାର୍ଯ୍ୟ-କଳାପ ମଧ୍ୟରୁ 'ମୁଁ'ର ଏହି ଅନୁଭୂତି ହୋଇଛି ଯେ ସେହି ଅଦୃଶ୍ୟ ବ୍ୟକ୍ତି ଆଉ କେହି ନୁହେଁ, ସେ ହେଉଛି 'ଆତ୍ମସମ୍ଭବା ଅଭିବ୍ୟକ୍ତି ।' ଏହି ଅନ୍ଧାର ମଧ୍ୟରୁ ଯେଉଁ ଜ୍ୟୋତି ଜାଗ୍ରତ ହୋଇଉଠିଛି ତାହା ଯଥାର୍ଥକୁ ଆହୁରି ଯଥାର୍ଥ କରିଦେଉଛି । 'ମୁଁ' ତାର ଭ୍ରଷ୍ଟ ରୂପକୁ ଦେଖି ଡରି ଯାଇଛି ସତ, କିନ୍ତୁ ତାକୁ ଛାଡିପାରୁ ନାହିଁ ।

ଅସ୍ମିତା ଅନୁସନ୍ଧାନର ଆଉ ଗୋଟିଏ ରୂପ ହେଉଛି ଯେ ମନୁଷ୍ୟ

ସମାଜରେର ମୁକ୍ତ ନୁହେଁ । ସେ ସ୍ପଷ୍ଟଭାବେ ଅନୁଭବ କରୁଛି ଯେ ବର୍ତ୍ତମାନ ସମାଜ ତା ପକ୍ଷରେ ଦୁର୍ବହ । ସବୁବେଳେ ତାର ପିଠି ଉପରେ ଏକ ବୋଝ ଲଦା ହୋଇ ରହିଛି । ସେ ସବୁବେଳେ ଖୋଜୁଛି ଏହି ମଠ ଓ ଟାଉର ବନ୍ଧନ ଭେଦ କରି, ଦୁର୍ଗମ ପ୍ରାଚୀରକୁ ଅତିକ୍ରମ କରି ଅରୁଣାଭ ଚନ୍ଦ୍ରର ଦର୍ଶନ ପାଇଁ । ଭାଗବତର ଅକ୍ରୂର ଏଠିପରି ଏକ ଦ୍ୱନ୍ଦ୍ୱାତ୍ମକ ଚରିତ୍ର । ପଛରେ କ୍ରୂର କଂସ ଓ ଆଗରେ କରୁଣାସାଗର ଭଗବାନ । ପିଠି ଉପରେ ନୃଶଂସ କଂସର ନିର୍ଯାତନାର ପ୍ରହାର ଓ ମସ୍ତକରେ ଏହାର ମୁକ୍ତିର ଆଲୋକ । ଆଧୁନିକ ମନୁଷ୍ୟ ସମାଜ ଏହିପରି ଏକ ଯୁଗଯନ୍ତ୍ରଣାର ସମ୍ମୁଖୀନ । ସେ ଆତ୍ମରକ୍ଷା ପାଇଁ, ମୁକ୍ତିପାଇଁ ଚିତ୍କାର କରୁଛି । ଗୁରୁବାବୁ ସେଥିପାଇଁ ଅକ୍ରୂର ଚରିତ୍ରକୁ ନିର୍ବାଚନ କରି ତାଙ୍କ 'ଉକ୍ତି' ମାଧ୍ୟମରେ ମନୁଷ୍ୟର ଏହି ଭାରାକ୍ରାନ୍ତ ମନର ଯନ୍ତ୍ରଣାଭୂତ ପୀଡ଼ାକୁ ଦେଖାଇବାପାଇଁ 'କାଳପୁରୁଷ'ରେ କହିଛନ୍ତି :

> "ହେ ଅକ୍ରୂର ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର
> ରୁହ ରୁହ ଛିଡ଼ା ହୁଅ ପିଠିରେ ମୋ ଭ୍ରମ ପରି ବୋଝ
> ଅନ୍ଧାରରେ ପାଦ ଯେବେ ଛନ୍ଦି ହୁଏ ଚୂଡ଼କଙ୍କ ନିଶା
> ଶୁଖେ ଗ୍ରୀବ ଭାଙ୍ଗେ ହାଡ଼ ବଢ଼ିଉଠେ ବଢ଼ିଉଠେ ଶୋଷ ।"

କେବଳ ଗୁରୁବାବୁ ନୁହନ୍ତି ଆଧୁନିକ କବିତାରେ ଏହା ହେଉଛି ଏକ ବୈଶିଷ୍ଟ୍ୟ ପ୍ରବୃତ୍ତି । ହିନ୍ଦୀ କବି ସର୍ବେଶ୍ୱର ଦୟାଲ 'ଅପନୀ ବେଟୀ କେ ମୃତ୍ୟୁପର' ଶୀର୍ଷକ କବିତାରେ 'ମୁଁ'ର ଯନ୍ତ୍ରଣାଭୂତ ପୀଡ଼ାକୁ ଠିକ୍ ଏହିଭଳିଭାବେ ଅନୁଭବ କରିଛନ୍ତି । ନଈର ବଢ଼ି ଦୁଇକୂଳ ଖାଉଛି । ସେହି ଉପକୂଳର ନଈପାଣି ଭିତରେ 'ମୁଁ' ଅଣ୍ଟାଏ ପାଣିରେ ଠିଆ ହୋଇଛି । ତା' ପିଠି ଉପରେ ଲଦା

ହୋଇଛି ଏକ ସିନ୍ଦୁକ । ତାର ଆଖି ଆଗରେ ଘରସବୁ ଭାଙ୍ଗିଯାଇ ଭସିଯାଉଛି ଓ ସେହି ଭଙ୍ଗା ଛାତ ଉପରେ ଦୁଇଟି ଖେଳନା ନିର୍ଭୟରେ ବସିଛନ୍ତି । ପଂକ୍ତିଗୁଡ଼ିକ ଏହିପରି ବୋଧହୁଏ ମନୁଷ୍ୟ ଜାତିକୁ ଉପହାସ କରିବାପାଇଁ ଉଦ୍ଦିଷ୍ଟ—

"ଘୁଟେଁ ଔର ହରହରାତୀ ହୁଇବାଢ଼
କମର ତକ ପାନୀ ମେଁ
ପୀଠ ପର ସିନ୍ଦୁକ ଲଦେଖଡ଼ା ମେ
ଦେଖ ରହା ହୁଁ ସାମନେ ମେ
ବହତା ହୁଆ ସାରା ଘର,
ହିଲତୀ ହୁଇ ଛାତ ପର
କୁଛ ସହମେ, କୁଛ ନିଡର ବୈଠେ
ଅପନେ ଦୋ ଖିଲୌନେ
ଭବିଷ୍ୟ ସିକୋଡ଼ତା ଜାରହେମେରୀ ପୀଠ
ଔର ଝୁକାତା ଯାରହା ହୈ ମେରେ କନ୍ଧେ
ଛୁତ ପହାଡ଼ ବନତେ-ବନତେ
ମେଁ ଆଦମୀ ସେ ନାଂବ ବନାତା ଯାରହା ହୁଁ ।"

ଗୁରୁବାବୁଙ୍କ କବିତା-ସଗ୍ରହରେ ତାଙ୍କ ସୃଜନାତ୍ମକ ପ୍ରବୃତ୍ତିର ଦୁଇଟି ରୂପ ଦେଖିବାକୁ ମିଳେ କ୍ଷୁଦ୍ର ପୁଣି ଦୀର୍ଘ କବିତା ମାଧ୍ୟମରେ । କ୍ଷୁଦ୍ର କବିତା ସବୁରେ ତାଙ୍କର ମନର ପୀଡ଼ା ଯେପରି ଘନୀଭୂତ ହୋଇ ପ୍ରକାଶ ପାଇଛି ତାହା ଦୀର୍ଘ କବିତାରେ ନାହିଁ । ତାଙ୍କର ପ୍ରତ୍ୟେକ କବିତାରେ ନାଟକୀୟତା ଓ ଗୀତାତ୍ମକତାର ସମାବେଶ ଦେଖିବାକୁ ମିଳୁଥିଲେ ହେଁ କ୍ଷୁଦ୍ର କବିତାର ଗୀତାତ୍ମକତା ଦୀର୍ଘ କବିତାରେ ହ୍ରାସ ପାଇଛି । ଦୀର୍ଘ କବିତାରେ ଭାବସଂହତି ଓ ତୀବ୍ରତା

ପରିବର୍ତ୍ତେ କଥାର ଏକ କ୍ଷୀଣ ଧାରା ପ୍ରବେଶ କରିଛି । ଫଳରେ ଅଗଷ୍ଟ ହ୍ୱିଲ୍ ଯାହାକୁ 'କାହାଣୀର ଅନୁକରଣ' (ଇମିଟେସନ୍ ଅଫ୍ ଆକ୍‌ସନ) କହିଥିଲେ, ତାହାହିଁ ହୋଇଛି ଆଧୁନିକ କବିତାର ଧର୍ମ । ଫଳରେ ଆଧୁନିକ କବିତାରେ କଥାତ୍ମକ ଓ ବର୍ଣ୍ଣନାତ୍ମକ ପ୍ରବୃତ୍ତିର ପ୍ରାଧାନ୍ୟ ଆବଶ୍ୟକୀୟ ଅଙ୍ଗଭାବେ ସ୍ୱୀକୃତ ହୋଇଛି ।

ଗୁରୁବାବୁ ଆଧୁନିକ କବିତାର ସ୍ରଷ୍ଟା ରୂପେ ପ୍ରାଚୀନ କବିତାର ବନ୍ଧ ଶୃଙ୍ଖଳାକୁ ଭାଙ୍ଗି ଦେଇ ଭାବନାର ସୀମାକୁ ବଢ଼ାଇବା ବ୍ୟଗ୍ର କରିଥିଲେ ହେଁ ତାଙ୍କ ଭାବନା ବିଶେଷ ଭାବେ ପ୍ରତିଷ୍ଠାକେନ୍ଦ୍ରିତ ଶବ୍ଦଧରଙ୍କ ବୈଶିଷ୍ଟ୍ୟ ସମାଜରୁ ସେ ଗାନ୍ଧୀବାଦ, ସାମ୍ୟବାଦ, ରାଜନୀତି, ହିନ୍ଦୁ ମୁସଲମାନ କନ୍ଦଳ, ଭାରତର ସ୍ୱାଧୀନତା, ପରିବର୍ତ୍ତିତ ସମାଜରେ ନୂଆ ହୋଇ ଦେଖାଯାଇଥିବା ସିଗାରେଟ ଓ କୋଇଲଚୂଲିର ଧୂଆଁ, ଥାର୍ଡ଼କ୍ଲାସ ରେଲଟିକେଟ ଘର, ଫିଲ୍ମ ଗୀତ, ବଜାରର ଅନେକ କଥା ଦେଖିଥିଲେ ହେଁ ଏସବୁର ତିକ୍ତତାକୁ ସେ ନିଜେ ଅନୁଭବରେ ଦେଖିଥିବା ପରି ଜଣାପଡ଼େ ନାହିଁ । ଆଧୁନିକ କବିତାର କେତେକ ନିର୍ଦ୍ଦିଷ୍ଟ ପ୍ରବୃତ୍ତିକୁ ସେ ତାଙ୍କ କବିତାରେ କେବଳ ପ୍ରୟୋଗ ଓ ପରୀକ୍ଷା କରିଛନ୍ତି । ଫଳରେ ଶେଷ ଦର୍ଶନ ପୁଷ୍ପବଣି ରଣିକାର ଗନ୍ଧ ତାଙ୍କ ଦେହରୁ ପୂରା ଭାବରେ ଛାଡ଼ି ପାରିନାହିଁ । ସେ ସାମାଜିକର ପୀଡ଼ାକୁ ମିଥ୍ୟା ମଧ୍ୟରେ ଦେଖିଛନ୍ତି । ଏକଥା ତାଙ୍କ ନିଜ ଉକ୍ତିରେ ସ୍ପଷ୍ଟ ।

'ଅରଣ୍ୟର ଅଜଗର ମୁଁ ନହେ ଅଥବା ଘ୍ରାତିର
ମୁଁ ସହେ କସଣ ଲକ୍ଷ ଦେହ ଆଜ ମନ ଓ ଆତ୍ମାର
ମୋ ଦେହରେ ଗନ୍ଧ ପୁଣି ପୁଷ୍ପବଣି ରଣିକାର
ଚନ୍ଦ୍ରଭାନୁ ତୁଙ୍କାର ଓ ଇତିକାର ଲବଣ୍ୟବଣୀର
ମୋ ମାଂସର ଗନ୍ଧ ପୁଣି ମଦ ମସ୍ୟ ନାଗିନୀର
ମୋ ଦେହରେ ପୃଥିବୀର ଯାଯାବର ଆଲୋକ ଅନ୍ଧାର ।'

ଗୁରୁବାବୁଙ୍କ ପ୍ରିୟବାନ୍ଧବୀ କୌଣସି ଶରୀରଧାରିଣୀ ନାୟିକା ନୁହେଁ । ପ୍ରାଚୀନ କବିଙ୍କଠାରୁ ଏହାର ରୂପ ଓ ରଙ୍ଗ ସ୍ୱତନ୍ତ୍ର । ଏହା ଜଣଙ୍କ ମଧ୍ୟରେ ଆବଦ୍ଧ ନ ହୋଇ ବହୁ ମିସ୍ ଦାସ ମିସ୍ ଗୁପ୍ତ ମିସ୍ ସବୁ ନଟିଳର ସପନ ଭିତରେ ପ୍ରକାଶ ପାଇଛି ଏବଂ ସେ ତାଙ୍କୁ ସବୁ କନ୍ଦ୍ର ଦୋକାନରେ, ଆଧୁନିକ ପ୍ରେମ ଗଳ୍ପରେ ରେଡ଼ିଓର ଖବର ଭିତରେ, ଫିଲ୍ମ ଗୀତରେ, ଥାର୍ଡ଼ କ୍ଲାସ ରେଲ ଟିକେଟ ଘରେ, ଟାଉନହଲ ସଭାରେ ପୁଣି ନରଗିସ୍ ର ଫଟୋରେ ଖୋଜିଛନ୍ତି । ଏହି ପ୍ରିୟବାନ୍ଧବୀର ପ୍ରେମରେ ସେ ନିରେଖିବା ପ୍ରତାରିତ ସଙ୍ଗୀତର ସନ୍ଧାନ କରିନାହାନ୍ତି । ସେ ପ୍ରଶ୍ନ ବି ଉଠିନାହିଁ । ସେ ଜାଣିଛନ୍ତି, ଦିନଦିନ ମାସ ମାସ ରାସ୍ତାରେ ଚାଲିଲେ ଡେପୁଟି କାମ ପାଇଁ ବାହାରେ ରହିବା ଫଳରେ ବର୍ଷାପାଣି ପଡ଼ିବା ଦ୍ୱାରାରେ ଗୋଡ଼ ଝାସିଯିବା ନେପଥ୍ୟ ରୀତି ଅନୁସାରେ ସ୍ୱାଭାବିକ, ସେହିପରି ଟାଉନହଲର ସଭାରୁ ଆରମ୍ଭ କରି ହୋଟେଲ, ସିନେମା, ଗଳି, କାଳକୁଲ, ନଈକୂଳରେ ବୁଲୁଥିବା ପ୍ରିୟବାନ୍ଧବୀର ସଙ୍ଗୀତ । ତା'ର କଳାଧାରା ସଙ୍ଗୀତ ଉପରେ ଆସ୍ଥା ରଖିବା ହିଁ ଆଜିର ଧର୍ମ । ସ୍ଖଳନ ପ୍ରକୃତିର ନିୟମ । ଏହାର ଉପରେ ବିଶ୍ରାମ ରଖି ତାଙ୍କର ପ୍ରିୟା ବେଣୀ ଝୁଲାଇ ବାର ଦର୍ପଣରେ ବୁଲୁଛି ଆତ୍ମହତ୍ୟାରୋଗରେ ଓଜସ୍ୱିମାଭୂଷଣ ପ୍ରଦାନ କରି ।

ଗୁରୁବାବୁ ରୋମାଣ୍ଟିସିଜିମ୍ ଓ ସିନିସିଜମ୍ ଉପରେ ଯେତେ କୁଠାରଘାତ କଲେ ବି, ରୋମାଣ୍ଟିସିଜମ୍ ରୁ ସମ୍ପୂର୍ଣ୍ଣଭାବେ ମୁକ୍ତ ହୋଇପାରିନାହାନ୍ତି । ସେ ନିଜକୁ ଖୋଜିବା ଆଳରେ ପ୍ରାପ୍ତ ପ୍ରିୟାର ସାହଚର୍ଯ୍ୟ ନେଇଛନ୍ତି ଏବଂ ସେହି ପ୍ରିୟାକେନ୍ଦ୍ରିତ ବୃତ୍ତ ଦେଇ ସେ ବାହାର ଜଗତର ବିଭିନ୍ନ ଦୃଶ୍ୟମାନ ବସ୍ତୁର ଯେଉଁ ମାନସିକ ମାନଚିତ୍ର ଆଙ୍କିଛନ୍ତି, ତାହା ଅନେକ ସମୟରେ ଅସ୍ପଷ୍ଟ ହୋଇଯାଇଛି । ପ୍ରିୟାର ପ୍ରଭାବ ନିକଟରେ ଏହା ଅତ୍ୟନ୍ତ କ୍ଷୀଣ । ସେଥିପାଇଁ ଆଧୁନିକ ପାଠକ ସବୁବେଳେ ପ୍ରାଚୀନ ପାଠକ ପରି ପ୍ରିୟାର ନୂପୁରଧ୍ୱନିର ମଞ୍ଜୁଳତାରେ ମୁଗ୍ଧ ! ପ୍ରିୟାର ପରିବ୍ୟାପ୍ତ ପ୍ରଭାବ ନିକଟରେ ସଂସାରର ସମସ୍ତ ଜଟିଳତା ସଙ୍କୁଚିତ, ସୀମିତ ଓ କ୍ଷୀଣ ।

---

# ଗୁରୁପ୍ରସାଦଙ୍କ କବିତାରେ ରୂପକଳ୍ପର ବ୍ୟବହାର

### ସତ୍ୟଶଙ୍କର ମିଶ୍ର

ଆଗରୁ ଆଲୋଚନା ପ୍ରସଙ୍ଗରେ କହିଥିଲି, ଗୁରୁବାବୁଙ୍କ ଭାଷା ପ୍ରବୃତ୍ତି ବା ଇନ୍ଦ୍ରସ୍ପୃର ଭାଷା ସାଦାକ ତାଙ୍କର ବ୍ୟକ୍ତିଗତ ଶୈଳୀ, ରୂପକଳ୍ପ, ପ୍ରତୀକ ଓ ଅନୁଭୂତିକୁ ରୂପଦିଏ । * ଯଦି ସ୍ୱେଚ୍ଛବାଦୀ ସଙ୍ଗୀତମୟତା (ସମସ୍ତ ସମୟରେ ମାତ୍ରାଧିକ ସଙ୍ଗୀତମୟତା) ତାଙ୍କ କୃତିର ମୌଳିକତା ଭାବରେ ନଆସେ ତେବେ ରୂପକଳ୍ପ ତାର ଗୋଟାଏ ସହଜାତ ପ୍ରତିକ୍ରିୟା କହିଲେ ଠିକହେବ । 'କାଳପୁରୁଷ' ବା ଯେ କୌଣସି ଲେଖାରେ ସଙ୍ଗୀତମୟତା ଓ ପ୍ରବୃତ୍ତିଗତ ଭାଷାର ଯେ କୌଣସି ସ୍ଥାନରେ ସମନ୍ୱୟ ହୁଏ, ରୂପକଳ୍ପର ସେଇଠାରେ ଆକସ୍ମିକ ସୃଷ୍ଟି ହୁଏ । ଅଥବା ସଙ୍ଗୀତମୟତାର ଶେଷ ଯେଉଁଠି ରୂପକଳ୍ପର ଆରମ୍ଭ ସେଇଠି । ଯେପରି—

"ମେ ଦେଖିଲି ପୁରୁଣାକଥା ଯେତେବେଳେ ଅଳ୍ପଥିଲା ଦିନ
ଆଉଥିଲା ଆକାଶରେ ରକ୍ତସ୍ରାବ ପଉଷ ସନ୍ଧ୍ୟାର..."

(ପ୍ରିୟ ବାନ୍ଧବୀ)

କିମ୍ବା

ଏ ବର୍ଷର ନଷ୍ଟ ଆମ୍ବ ନଗ୍ଛ ଟିଆ କେତେବେଳେ
ଅନ୍ଧାର ଭିତରୁ
ହଠାତ୍ ଆସି ଛିଡ଼ାହୁଏ ସାମନାରେ ସୁଏଟର୍ ସାଲ୍ ଘୋଡ଼େଇହୋଇ..."

(ନିହତ ଗୋଧୂଳି)

---

*'ମୂଲ୍ୟାୟନ ୩' : ଭବିଷ୍ୟ-ଅନୁଶୀଳନ : ଆଖିର କପୋତ ମୋର
ପୃ ୩୩-୩୯

ଏଠାରେ ସ୍ପଷ୍ଟ ଲକ୍ଷ୍ୟ କରାଯାଏ କିପରି ଶବ୍ଦ ଓ ଛନ୍ଦ ଯୋଜନା ସହିତ ରୂପକଳ୍ପ ଜଡ଼ିତ ହୋଇ ରହିଛି । ଗୁରୁବାବୁ ମୁକ୍ତ ଛନ୍ଦକୁ ଗ୍ରହଣ କରିଛନ୍ତି । ଶବ୍ଦ ଯୋଜନା ଅନୁରୂପ ଭାବରେ ସ୍ୱାଧୀନ । ସେହି ଦୃଷ୍ଟିକୋଣରୁ ବୋଧହୁଏ ରୂପକଳ୍ପକୁ କୌଣସି ଗୋଟିଏ ପର୍ଯ୍ୟାୟଭୁକ୍ତ କରି ନାହାନ୍ତି । ପାଶ୍ଚାତ୍ୟ ଚିନ୍ତାଧାରା ଓ ଅନୁଭୂତିକୁ ଆଧାର କରି ରୂପକଳ୍ପକୁ ଅଣାଯାଇଛି ଏବଂ ସେମ ତାକୁ ସ୍ଥାନୀୟ ବା ନିଜସ୍ୱ କରାଯାଇଛି । ଯେପରି—

"ମୁଁ ତମକୁ ସ୍ୱପ୍ନ ଦେଖେ
ମୋର ଡିଲ ପାଇଜାମା କମିଜର ଅନ୍ତରାଳରେ

('ଅଳକା ସାନ୍ୟାଲ')

କିମ୍ବା,

"ମୁଁ ଜାଣିଛି ହଜିଥିବା ରୁମାଲରୁ
ଛୁରା ଉଠେ ରକ୍ତ ମୁଦ୍ରା ହୋଇ" ।

('ଗୋବର ଗଣେଶ')

ଏଠାରେ ଏଲିୟଟ୍, ପାଉଣ୍ଡ ବା ସେକ୍ସପିୟରଙ୍କ ଚେତନାର ପ୍ରଭାବ କବି କଣ୍ଠିତ ଭାବରେ ଏଡ଼ାଇ ପାରି ନାହାନ୍ତି । କିନ୍ତୁ ସଚ୍ଚି ରାଉତରାୟଙ୍କ ରୂପକଳ୍ପ ଧର୍ମ ଏଠାରେ ଆଦୌ ଦେଖାଯାଏ ନାହିଁ । ରାଉତରାୟଙ୍କ ରୂପକଳ୍ପ-ଧର୍ମରେ ରୂପକଳ୍ପ ଗୁଡ଼ିକ ହୁଏତ ବିଦେଶୀୟ ଚିନ୍ତାଧାରାକୁ ନେଇ ଗୋଟିଏ ପର୍ଯ୍ୟାୟଭୁକ୍ତ ହୋଇ-ପଡ଼ନ୍ତି ନଚେତ୍ ସ୍ଥାନୀୟ ଅନୁଭୂତି ବା ଚିନ୍ତାଧାରା ଭିତରେ ସୀମାବଦ୍ଧ ରହନ୍ତି । ଏଠି ତା' ମୋଟେ ଦେଖା ଯାଏନା । ସେହିଁ ମାନସିକ

ସ୍ତରରେ ଗୁରୁବାବୁ ପାଶ୍ଚାତ୍ୟ ଚେତନାରୁ ରୂପକଳ୍ପ ଗୁଡ଼ିକ ଆଣନ୍ତି ସେଇ ମାନସିକ ସ୍ତରରେ ଥାଇ ସଙ୍ଗେ ସଙ୍ଗେ ଭାରତୀୟ ଚେତନାର ଭିତ୍ତିରେ ରୂପକଳ୍ପର ସୃଷ୍ଟି କରାଇଥାନ୍ତି ଯା'କି ତାଙ୍କ ରୂପକଳ୍ପ-ଧର୍ମକୁ ଗୋଟାଏ ବିଶେଷ ଆକାର ଦିଏ । ଯେପରି—

“ଏ ହାତ ଉପରେ ମୋର ଅକସ୍ମାତ ଛୁଡ଼ାହୁଏ
ହଠାତ ସମସ୍ତ × ×
ଜାଣିଛନ୍ତି କୁମ୍ଭୀପାକ ନରକରେ ଅସହାର ଦଶା ।
(ଗୋବର ଗଣେଶ)

ରମୁର କ୍ୟାଲକୋ ଧୋତି ଜଳିଗଲା, ପୋଡ଼ିଗଲା
ନଙ୍ଗ୍ ଝୁକଙ୍ଗ୍ ମଣ
ପଞ୍ଚପୁଷ୍ପ ଅମୃତରେ ଏକାଦଶ ଦିନ ଦିପହରେ ।
(‘କାଳପୁରୁଷ’)

“ସାଧବ ଯୁବତୀ ମାନେ ଅତି ପ୍ରମୋଦରେ
କର୍ ଚଢ଼ି ବୁଲାଗଲେ, ଉଡ଼ିଗଲେ କାଉ ଓ ବାଦୁଡ଼ି” ।
(‘କାଳପୁରୁଷ’)

ଏ ରକମ ଦ୍ୱୈତ ଚେତନା ତାଙ୍କ ରୂପକଳ୍ପ-ଧର୍ମର ମୌଳିକତା କହିଲେ ଠିକ ହେବ । ଏହା ବ୍ୟତୀତ ଇମାଜିଷ୍ଟ କବିତାର କଠିନ ରୂପକଳ୍ପ ଗୁଡ଼ିକ ଯେପରି ଝକଲାଙ୍କ ଆଧୁନିକତାର ପରିଚୟ ବହନ କରେ, କବିଙ୍କ ରୂପକଳ୍ପ ଗୁଡ଼ିକ ସେଇ ଦୃଷ୍ଟିରୁ ମଧ୍ୟ ବିଚାରଯୋଗ୍ୟ । ତଥାପି ଏତିକ ଇମାଜିଷ୍ଟ କବିତାରେ ସାଂଗୀତିକତାକୁ ବାଦ୍ ଦିଆଯାଏ ।

ଏଠାରେ ନୁହେଁ । 'କାଳପୁରୁଷ' ବା ଅନ୍ୟାନ୍ୟ ଅନେକ କବିତାରେ ରୂପକଳ୍ପ କଠିନ, ଜଡ଼ବାଦୀ, ଜୈବିକ ସ୍ତରରୁ ଆରମ୍ଭ ହୋଇ କ୍ରମେ ଆଧ୍ୟାତ୍ମିକ, କୋମଳ ସ୍ତରରେ ପହଞ୍ଚି ଥାଏ । The Wastelandର ଛାୟା 'କାଳପୁରୁଷରେ' ଭାଷା ଓ ରୂପକଳ୍ପ କ୍ଷେତ୍ରରେ ପଡ଼ିଛି । କିନ୍ତୁ ଗୁରୁବାବୁ ନିଜ ମୌଳିକତା ଶେଷଯାଏଁ ବଜାୟ ରଖିଛନ୍ତି ; ଯେପରି

ଏ ସହର ମୁହଁରେ ଲୋଳ ଚୋଳ ପାଉଁଶ ଅଙ୍ଗାର
× × ପ୍ରତିମା ନାୟିକ ହସେ ତା ଦେହରେ କଳାଶାଢ଼ୀ
ଚୁଳ୍ ଆଉ କ୍ରୁସର ବିକାର ।

('କାଳପୁରୁଷ')

ଆଖିର କପୋତ ମୋର ଆକାଶର ଇସ୍ପାତ ଦେହରେ
ବାଧା ପାଇ ପ୍ରତିଦିନ ଫେରିଆସେ ।

('ଆଖିର କପୋତ ମୋର')

ଗୋଟାଏ ନଗ୍ନ କଠିନ ରୂପକଳ୍ପ ତିଆରି କରିବାକୁ ଯାଇ କବି ଅତି-ବାସ୍ତବିକ (Surrealistic) ହେବାକୁ ଚେଷ୍ଟା କରିଛନ୍ତି, କିନ୍ତୁ ଛନ୍ଦ ବ୍ୟବହାର କରିବାର ଯେଉଁ ସ୍ୱାଭାବିକ ପ୍ରବୃତ୍ତି କବିଙ୍କର ରହିଛି, ତା ବୋଧହୁଏ ରୂପକଳ୍ପଗୁଡ଼ିକୁ ଅଧିକ ପରୀକ୍ଷାମୂଳକ ବା ମୌଳିକ କରିପାରି ନାହିଁ । ତେବେ ରୂପକଳ୍ପଗୁଡ଼ିକ କ୍ରମେ ଏକ ମନନଶୀଳ ସ୍ତରକୁ ଯାଇ ବ୍ୟକ୍ତିବାଦୀ ଅଧ୍ୟାତ୍ମ ଚେତନାର ଅଂଶୀଦାର ହୋଇଛନ୍ତି । ସବୁଠାରୁ ଅପୁଂଖିତ ପର୍ଯ୍ୟାୟରେ ରହେ ତାଙ୍କର ବ୍ୟକ୍ତିବାଦୀ ରୂପକଳ୍ପଗୁଡ଼ିକ । ଅହେତୁକ (Abstract) ସ୍ତରକୁ ଉଠି କବିଙ୍କ ଆତ୍ମପରିଚୟ ଦିଏ ।

ଯେପରି

ମୁଁ ତୁମର ସଙ୍ଗୀତର ଧ୍ରୁବତାରା ସ୍ୱାମୀ ଓ ପ୍ରଭବ ।

('ଶରତ')

କମ୍ମା,

ଅରଣ୍ୟର ଅଜଗର ମୁଁ ରହିବ ଅଥବା ସ୍ଥିର ।

× ×

ମୁଁ ଯିବ ତୁମର ଘର ତାପ୍ରା ଖୋଜି ଜନ୍ମ ଖୋଜ

ଖୋଜି ଖୋଜି ଝରଣାର ସୁଅ

ମୁଁ ଯିବ ତୁମର ଘର ଖୋଜି ମୋର ପିତାମାତା

ହମ୍ଭ ଲ ନଈ ରେ ଖୋଜି ଅରୁନ୍ଧତୀ ତାରାର ଆଲୁଅ ।

× ×

ରାମକୃଷ୍ଣ ମିଶନରୁ କେତେବାଟ ଏମାର ମଠକୁ ?

('କାଳପୁରୁଷ')

ଭ୍ରଷ୍ଟ ଯୌନତାର ଶୀକାର ହୋଇ ସାମ୍ପ୍ରତିକ ସମାଜ ବା କବି ନିଜେ ଅସହାୟ ହୋଇ ତାର ସମାଧାନ ପାଇଁ ବ୍ୟାକୁଳ ହୋଇପଡ଼ିଛନ୍ତି । ଭ୍ରଷ୍ଟ ଯୌନତା ତାଙ୍କ ଲେଖାର ଅନ୍ତଃସ୍ୱର । ତେଣୁ ଦେହଜ ରୂପକଳ୍ପରୁ ଆରମ୍ଭ କରି ମନନଶୀଳ ରୂପକଳ୍ପ ପର୍ଯ୍ୟନ୍ତ ସବୁ ପର୍ଯ୍ୟାୟରେ ସେ ନିଜେ ବିଚ୍ୟୁତ ହୋଇ ରହିଛନ୍ତି । ଭାରତୀୟ ବେଦରେ ବର୍ଣ୍ଣିତ ଶିବଙ୍କର ଅର୍ଦ୍ଧନାରୀଶ୍ୱର ମୂର୍ତ୍ତିକୁ ସାମ୍ପ୍ରତିକ ଭ୍ରଷ୍ଟଯୌନତାର ନଗ୍ନ ଅବସ୍ଥାକୁ ଆଣି, ବର୍ତ୍ତମାନ ଯେଉଁ ସହଜାତ କ୍ଲୀବତ୍ୱ ବା ବନ୍ଧ୍ୟାତ୍ୱ ସମାଜକୁ ପ୍ରଭାବିତ କରିଛି, ତାର ସ୍ୱରୂପ ଦେବାକୁ ଯାଇ କବି ବ୍ୟକ୍ତିବାଦୀ ରୂପକଳ୍ପର ସଫଳ ସୃଷ୍ଟି କରିଛନ୍ତି ।

ଏକ ଦେହେ ଜନ୍ମ ନେଲା ପୁରୁଷ ମୁଁ ସେହି ଦେହେ
ନାରୀର ସ୍ୱଭାବ
ମୋପାଖେ ଏକାଠି ହେଲା ସିଲ୍‌କଶାଢ଼ୀ ପେଣ୍ଟକୋଟ୍
ଧ୍ୱଜଭଙ୍ଗ ପ୍ରସୂତି ଯନ୍ତ୍ରଣା ।

('କାଳପୁରୁଷ')

ଏପରି ବ୍ୟକ୍ତିବାଦୀ ରୂପକଳ୍ପ ପ୍ରାୟ ଅନ୍ୟକୌଣସି ସାମ୍ପ୍ରତିକ ଲେଖାରେ ନାହିଁ ।

ଏହାଛଡ଼ା 'ଉଦ୍ଧବ' ବା 'ଅକ୍ରୂର'କୁ ଗୋଟିଏ ଗୋଟିଏ କାବ୍ୟ ଭାବରେ ନିଆଯାଇଛି । ଯେପରି ଏଲିଅଟଙ୍କ Tiresias ସେପରି କବି-ବ୍ୟକ୍ତିତ୍ୱର ପ୍ରତିଫଳନ ହୁଏ ଉଦ୍ଧବ ଚରିତ୍ରରେ ।

ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର
ତୁମ୍ଭରୁହ ଛୁଡ଼ାହୁଅ ପିଠିରେ ମୋ ତୁମପରି ବୋଝ ।

('କାଳପୁରୁଷ')

ଉଦ୍ଧବ କବିଙ୍କ ଅସୁସ୍ଥ ମନର ସୁସ୍ଥ ଜିଜ୍ଞାସକ । ଗୋଟାଏ ମଣିଚକା । ଗୋଟାଏ ଧାରଣା କହିଲେ ଠିକ୍ ବୁଝାଯିବ । କାବ୍ୟର କଥାବସ୍ତୁ ଦୃଷ୍ଟିରୁ ଦେଖିଲେ ସେ ଗୋଟାଏ ଦାର୍ଶନିକ ଚେତନା । ଜଟିଳତାରୁ କବିଙ୍କୁ ରକ୍ଷା କରିବାର କବଚ । କିନ୍ତୁ ରୂପକଳ୍ପ ଭାବରେ ବୁଝିଲେ Homosexual ଇମେଜ୍ ଭାବରେ ନିଆଯାଇ ପାରେ । ମାତ୍ରାଧିକ ମାନସିକ ଅସୁସ୍ଥତା ଓ ବିପର୍ଯ୍ୟସ୍ତ ସାମ୍ପ୍ରତିକ ଭ୍ରଷ୍ଟ ବିକଳାଙ୍ଗ ଯୌନତାର ରୂପାନ୍ତର । ରମାକାନ୍ତ ରଥ, ସଉଭବ୍ୟୁ ଓ ଅନ୍ୟାନ୍ୟ ଅନେକ କବିଙ୍କ ଲେଖାରେ ଏ ବିଷୟ ଆମେ ଦେଖିଥାଉଁ । କିନ୍ତୁ ଗୁରୁବାବୁଙ୍କ କବିତାରେ ଏପରି Homosexual ଇମେଜ୍

ଓଡ଼ିଆ କବିତାର ମୌଳିକତା । ତେବେ ଏହା ପାଶ୍ଚାତ୍ୟ ଅନୁଭୂତିର ପ୍ରଭାବରୁ ମୁକ୍ତ ନୁହେଁ । ଯେପରି

ଧଳା ନଟୀପି ଧଳାକାର ବର୍ଣ୍ଣ ପୁଣି ଈଷତ୍ ପିଙ୍ଗଳ
ଯଷ୍ଟିର ଆଘାତ ଆଜ ବୃଷଭର ଆର୍ତ୍ତନାଦ······
('କାଳପୁରୁଷ')

ତେବେ ଯାହାହେଉ ଗୋଟାଏ କଥା ଦେଖିବାର କଥା, ବହୁବିଧ ରୂପକଳ୍ପର ସମାହାର କବିତାର ଗଢ଼ଣକୁ ନିୟନ୍ତ୍ରିତ କରିନି । ଅନ୍ୟାନ୍ୟ କବିଙ୍କ ପରି ଗୁରୁବାବୁ କେବେ ଦୁର୍ବୋଧ ନୁହନ୍ତି । ଏହା ତାଙ୍କ ରୂପକଳ୍ପ ଯୋଜନାର ଚରମ ସଫଳତା ।

ମୁଖ୍ୟ ରୂପକଳ୍ପଗୁଡ଼ିକ ଆଲୋଚନା ପରେ ଏବେ ଗୌଣ ରୂପକଳ୍ପକୁ ଯିବା । ଏ ପର୍ଯ୍ୟାୟରେ କେବଳ ପାରମ୍ପରିକ ରୋମାଣ୍ଟିକ୍ ରୂପକଳ୍ପଗୁଡ଼ିକ ଆଖିରେ ପଡ଼େ । ଯେପରି

ବେଣୀପରି ଫିଟିଆସେ ଶ୍ରାବଣର ଆଷାଢ଼ ଶ୍ରାବଣ ।
('କାଳପୁରୁଷ')

ବା ଏପରି ଅସଂଖ୍ୟ ଉଦାହରଣ ରହିଛି । ଏହା କେବଳ ତାଙ୍କ ଆବେଗମୟ ଭାଷାର ରୂପାନ୍ତର ।

ମୋଟାମୋଟି ଭାବରେ ଗୁରୁବାବୁଙ୍କ ରୂପକଳ୍ପର ସଫଳତା ତାଙ୍କ ଭାଷା, ସଙ୍ଗୀତମୟତା, ଧ୍ୱନି, ଛନ୍ଦ ଇତ୍ୟାଦିର ବ୍ୟବହାର ଉପରେ ନିର୍ଭର କରେ । ବୋଧହୁଏ ଏଭଳି ସଙ୍ଗୀତମୟତା ନ ଥିଲେ ରୂପକଳ୍ପର ନିର୍ଦ୍ଦିଷ୍ଟ ବିକାଶ ସମ୍ଭବ ହୋଇପାରି ନ ଥାନ୍ତା ।



# ଗୁରୁପ୍ରସାଦଙ୍କ ସନେଟ୍

## ଶରତଚନ୍ଦ୍ର ଶତପଥୀ

ଇତିହାସ କହେ ଯେ, ରାଜା ଦ୍ୱିତୀୟ ଫ୍ରେଡେରିକ୍‌ଙ୍କ ପାରିଷଦମାନଙ୍କ ମଧ୍ୟରୁ ଜାକୋମୋ ଡା ଲେଣ୍ଟିନୋ (Giacomo da Lentino) ନାମକ ଜଣେ ସିସିଲୀୟ ଆଇନଜ୍ଞ ପ୍ରଥମେ ହିଁ ସନେଟ୍ ରଚନା କରିଥିଲେ । ଏହା ଖ୍ରୀ. ୧୨୩୦ ବା ୧୨୪୦ ଖ୍ରୀଷ୍ଟାବ୍ଦର କଥା । ତା'ପରେ ଆଜି ଆଜି ଭିତରେ ଅନେକ ବର୍ଷ ବିତିଗଲାଣି । ସନେଟ୍ ଇଟାଲୀରେ ସୀମାବଦ୍ଧ ନ ହୋଇ ୱ୍ୟାଟ୍ ଓ ସରେଙ୍କ ଦ୍ୱାରା ଇଂଲଣ୍ଡକୁ ଆସିଲା ଓ କାଳକ୍ରମେ ବିଶ୍ୱର ପ୍ରତ୍ୟେକ ସମୃଦ୍ଧ ଭାଷାରେ ଏହା ଲେଖାଗଲା ।

ସନେଟ୍‌ର ଆରମ୍ଭ କାଳରେ ଏହାର ଯେଉଁ ରୂପରେଖ ସ୍ଥିର କରାଯାଇଥିଲା ତାହା ବହୁତ ପରୀକ୍ଷା, ନିରୀକ୍ଷା, ପରିବର୍ତ୍ତନ ଭିତର ଦେଇ ଗତି କରି ସାରିଲାଣି । ଏହି ପରିବର୍ତ୍ତନର ଅନୁଶୀଳନ ଅବଶ୍ୟ ଏ ଆଲୋଚନାର ପରିସରଭୁକ୍ତ ଆଦୌ ନୁହେଁ ।

ଅନେକ ପରିବର୍ତ୍ତନ ପରେ ମଧ୍ୟ ଯେଉଁ ମୌଳିକ ଗୁଣମାନ ଏହାକୁ ବିଶ୍ୱର ବହୁ ଭାଷାରେ ସନେଟ୍ ବୋଲି ଗ୍ରହଣୀୟ କରିଅଛି, ତାହାହିଁ ସନେଟ୍‌ର ଅପରିବର୍ତ୍ତିତ ଓ ପରିବର୍ତ୍ତନରହିତ ଆତ୍ମା ବୋଲି କୁହାଯାଇ ପାରେ । ପ୍ରତ୍ୟେକ କବି ସନେଟ୍ ଲେଖିଲା-ବେଳେ ସନେଟ୍‌ର ଆତ୍ମା ପ୍ରତି ଯେଉଁ ପରିମାଣରେ ସଚେତନ, ତାହାହିଁ ତାଙ୍କର ସଫଳତାର ମାନଦଣ୍ଡ ।

ସନେଟ୍‌ର ଏକାନ୍ତ ନିଜସ୍ୱ ବାହ୍ୟିକ ଆବରଣ ହେଉଛି ଏହାର ନିର୍ଦ୍ଦିଷ୍ଟ କଳେବର, ନିତାନ୍ତ ସଂକ୍ଷିପ୍ତ ନ ହେଲେ ମଧ୍ୟ, ପର୍ଯ୍ୟାପ୍ତ ଚଉଦଟି ଧାଡ଼ି । ଏହି କଳେବର ମଧ୍ୟ ଅନେକ ଜ୍ୟାମିତିକ ବିଭାଜନ ସୂତ୍ର ଦ୍ୱାରା, (କେବେ ଆଠ, ଛ', କେବେ ଚାରି, ଚାରି, ଚାରି, ଦୁଇ, କେବେ ଆହୁରି ଅନ୍ୟ ଧାରାରେ) ପରୀକ୍ଷିତ । ଗୁରୁପ୍ରସାଦଙ୍କ ଦଶଟି ସନେଟ୍ ଜ୍ୟାମିତିକ ପରୀକ୍ଷା ନିରୀକ୍ଷାରହିତ ଓ ସେକ୍ସପିଅରଙ୍କ ସନେଟ୍‌ମାନଙ୍କ ସଦୃଶ । ସେ ଗ୍ରହଣ କରିଛନ୍ତି ସନେଟ୍‌ର ପ୍ରାପ୍ତ ସଚରାଚର ଆଦୃତ କ୍ୱାଟ୍ରେନ (Quatrain) ଓ କପ୍‌ଲେଟ(couplet)ରୂପ । ଯେହେତୁ ତାଙ୍କର ଦଶଟି ସନେଟ୍ ସମକାୟା ସମ୍ପନ୍ନ ଏବଂ ଏମାନଙ୍କର 'କାୟା' ବିବାଦରହିତ, ସର୍ବଥାଗ୍ରାହ୍ୟ, ତେଣୁ ଏହା ସତ୍ୟ ଯେ 'କାୟା' ନେଇ ଗୁରୁପ୍ରସାଦ ଖୁବ୍ ବ୍ୟସ୍ତ ନୁହନ୍ତି, ବା ସେ ଦିଗରେ ସେ କୌଣସି ନୂତନତ୍ୱ ବା ପରିବର୍ତ୍ତନ ଚେଷ୍ଟା କରିନାହାନ୍ତି । ବରଂ ସେ ମହାଜନ ଆଦୃତ ପନ୍ଥା ଗ୍ରହଣ କରି ଦୁଇଟି ବିଶିଷ୍ଟ କଥା ସୂଚାଇଛନ୍ତି । ପ୍ରଥମତଃ, ତାଙ୍କ 'ସନେଟ୍'ମାନଙ୍କର 'କାୟା' ପାଠକ ବା ସମାଲୋଚକଙ୍କୁ, ଏକ ସ୍ୱୀକୃତ ସିଦ୍ଧାନ୍ତକୁ ଓ ନିଏ ତଦ୍ଦ୍ୱାରା 'କାୟା' ଦିଗରେ କୌଣସି ହଟଚମଟର ସମ୍ଭାବନାକୁ ସମ୍ପୂର୍ଣ୍ଣ ଏଡ଼ାଇ ଦିଏ । ଦ୍ୱିତୀୟତଃ, ସ୍ୱତଃ ଏହି ସମ୍ଭାବନା ସୃଷ୍ଟି କରେ ଯେ ସନେଟ୍-ମାନଙ୍କର କଳାତ୍ମକ ଉତ୍କର୍ଷ ପ୍ରତିପାଦନ କାୟ'-ଉତ୍ତର ଅନୁଶୀଳନ ସାପେକ୍ଷ ।

ସେକ୍ସପିଅରଙ୍କ ସନେଟ୍‌ଗୁଡ଼ିକର ପ୍ରତିଟି ଧାଡ଼ି ଆୟାମ୍ବିକ୍ ପେଂଟାମିଟର (Iambic Pentametre)ରେ ଲେଖା । ପନ୍ତ-ପାତର ସୂତ୍ର ବାଦ, ପ୍ରତିଟି ଧାଡ଼ିରେ ଅନ୍ତଃ-ଛନ୍ଦପାତ ଏହାର

ସ୍ୱାତନ୍ତ୍ର୍ୟ, ସୌଷ୍ଠବ ତଥା ଉତ୍କର୍ଷଣ । ଏ ପ୍ରକାର ଛନ୍ଦପାତ ଏକ ଭାଷାଗତ ବୈଚିତ୍ର୍ୟ । ପ୍ରତ୍ୟେକ ଭାଷାର ନିଜସ୍ୱ ଶୃଙ୍ଖଳା ଓ ନିଜସ୍ୱ ଔଦାର୍ଯ୍ୟ ମଧ୍ୟ। ଏହି ଔଦାର୍ଯ୍ୟର ପରିପ୍ରକାଶ ଅନ୍ୟ ଭାଷାରେ ସମ୍ଭବ ନୁହେଁ । (ଆମ ''ଦେଖ ନବକାଳିକା, ବକାଳିକା ମାଳିକା'' ଅନ୍ୟଭାଷାରେ ପ୍ରକାଶ ଅସମ୍ଭବ । ତେଣୁ କେବଳ ଯତିପାତ ବ୍ୟତୀତ) ମୂଳକାଠାମୋ, 'କ୍ୱାଟ୍ରେନ୍' ଓ 'କପ୍ଲେଟ୍'(Quatrain ଓ Couplet)ର ଅନ୍ୟାନ୍ୟ ଶୃଙ୍ଖଳା ଗୁରୁପ୍ରସାଦଙ୍କ ସନେଟରେ ଖୋଜିବା ନିରର୍ଥକ । ଯତିପାତ ମଧ୍ୟ ବେଶ୍ ବିଶୃଙ୍ଖଳ । କ୍ୱାଟ୍ରେନଗୁଡ଼ିକରେ ହିସାବ ଦେବା ଦରକାର ନାହିଁ । ଅନେକ ସନେଟରେ 'କପ୍ଲେଟ୍'ଗୁଡ଼ିକ ମଧ୍ୟ ଯତିପାତର ଅନୁପମତା ପ୍ରଦର୍ଶନ କରନ୍ତି । ସନେଟ୍—୨ରେ 'ଯଦି'ଓ 'ପରିଧି', ସନେଟ···୫ରେ 'ଦେହ' ଓ 'ଭଲପାଅ', ସନେଟ--୭ରେ 'ଦେହ' ଓ 'ନପାଅ', ସନେଟ—୯ରେ 'ଦେଇ' ଓ 'କମିନାହିଁ', ଅସମ ଯତିପାତର ଉଦାହରଣ । ସନେଟ—୮ର କପଲେଟ୍‌ରେ 'ମୁକ୍ତ' ଓ 'କାହାର' ବିଷମ ଯତିପାତର ସୂଚନା । ମୋଟ ଉପରେ ଦେଖିବାକୁ ଗଲେ, ବ୍ୟାକରଣଗତ ବା ସନେଟର କାଠାମୋଗତ ଶୃଙ୍ଖଳା ପ୍ରତି ଗୁରୁପ୍ରସାଦ ବେଶ୍ ଉଦାସୀନ ।

ଇଏତ ଗଲା 'ସନେଟ'ର ବାହ୍ୟିକ ଶୃଙ୍ଖଳା । ଏବେ ଏହାର ଅନ୍ତଃନିହିତ ଶୃଙ୍ଖଳାଗୁଡ଼ିକ ବିଚାର କରାଯାଇ ପାରେ । ସନେଟ ସର୍ବଦା ଏକକ ସ୍ୱର-ସର୍ବସ୍ୱ । ଗୁରୁପ୍ରସାଦଙ୍କ ସବୁ ସନେଟରେ ସ୍ୱର ଏକକ । ଏହି ସ୍ୱର ପ୍ରଥମପୁରୁଷ, ଏକବଚନ । ତେଣୁ ଏକାନ୍ତ, ସୁସ୍ପଷ୍ଟ । ସନେଟରେ ସ୍ୱରଗତ ସଂଯମତା ଏହାର ବଳିଷ୍ଠତା, ଯାହାକି କ୍ୱାଟ୍ରେନଗୁଡ଼ିକ ଦେଇ ବୃଦ୍ଧି ସ୍ପଷ୍ଟ ଦୌରୁକତା ମାଧ୍ୟମରେ ଉତ୍ତରୋତ୍ତର ବିକାଶ ଲାଭ କରି କପଲେଟ୍‌ର ପରିଣତି ଦିଗକୁ ସ୍ୱତଃ

ଉତ୍ତୀର୍ଣ୍ଣ ହୋଇଥାଏ । ଗୁରୁପ୍ରସାଦଙ୍କ କ୍ଷେତ୍ରରେ ଏହି ବିକାଶର ସମ ଆଲୋଚନା ପରିପ୍ରେକ୍ଷୀରେ ସନେଟର ବିଷୟବସ୍ତୁମାନଙ୍କ ଉପରେ ଦୃଷ୍ଟିପାତ କରାଯାଉ । କାରଣ ଯୁକ୍ତି ଉପରେ ନିର୍ଭର କରୁଥିବା, ବିକାଶର ପରାକାଷ୍ଠା, ବିଷୟ ବା ଥିମ୍‌ର ମୌଳିକତା ଉପରେ ନିର୍ଭରଶୀଳ ଅନେକାଂଶରେ । ଯଦିଓ ଭିନ୍ନ ଭିନ୍ନ ବିଷୟବସ୍ତୁମାନଙ୍କୁ ନେଇ ବିଭିନ୍ନ କାଳରେ ସନେଟ ଲେଖା ଯାଇଛି, ସମୟର ଅଗ୍ନି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛି ମାତ୍ର ତିନୋଟି: ପ୍ରେମ, ସମୟ ଓ ମୃତ୍ୟୁ । ଏମାନେ କାବ୍ୟିକ ଜୀବନକୁ ଲାଗି ଅକ୍ଷୟ ତିନୋଟି ସଂଜ୍ଞା । ସମୟ ଓ ମୃତ୍ୟୁ ଓତଃପ୍ରୋତଃ ଜଡ଼ିତ ଓ ପ୍ରେମ ବିଷୟରେ ଏକ ମିଳିତ ବିରୁଦ୍ଧଶକ୍ତି ରୂପେ ସର୍ବଦା କବି ମାନସରେ କଳ୍ପିତ । ପ୍ରେମ ସମୟରେ ସୃଷ୍ଟି କିନ୍ତୁ ମୂଳରେ ସମୟୋତ୍ତର । ଏହାର ଜନ୍ମ ଅଛି, କିନ୍ତୁ ଏହା ମୃତ୍ୟୁହୀନ । ସମୟରେ ରହି ମଧ୍ୟ ପରାକାଷ୍ଠା ହାସ ଏହା କାଳଜୟୀ । ଏହି ସତ୍ୟ ଓ ସମ୍ବନ୍ଧର ସାଧାରଣ ନିର୍ଦ୍ଦେଶ ମୃତ୍ୟୁକୁ ଚିରନ୍ତନ, ଅନ୍ତହୀନ, ସଙ୍ଘର୍ଷ ପରିପ୍ରେକ୍ଷୀରେ କଳ୍ପନା କରି ସନେଟ ସୃଷ୍ଟି କରାଯାଇ ଥାଏ । କ୍ୱାଟ୍ରେନଗୁଡ଼ିକ ଏହି ସଙ୍ଘର୍ଷର ସୃଷ୍ଟପାତ ବିରୁଦ୍ଧଭାବ ଓ ମୃତ୍ୟୁହୀନ ପ୍ରେମର ଅବତାରଣା କରିଥାନ୍ତି ଓ କପ୍‌ଲେଟ ସର୍ବଥା ଏହି ମୃତ୍ୟୁହୀନ ପ୍ରେମର ଜୟଗାନ କରିଥାଏ । ପ୍ରେମ, ସମୟ ଓ ମୃତ୍ୟୁ ଦୈହିକ ନୁହନ୍ତି, ବରଂ ଦେହୋତ୍ତର, ତେଣୁ ସପ୍ତଦଶ ଶତାବ୍ଦୀରେ ଜନ୍‌ ଡନ୍‌ଙ୍କ କବିତାରେ ଯେଉଁ ଦେହ ସମ୍ବନ୍ଧୀୟ ବିଳାସିତା ଦେଖାଯାଇ ଥାଏ—ଯଦିଓ ଆଭିମୁଖ୍ୟ ଦେହହୀନତାକୁ ଉତ୍ତରଣ—ଏଲିଜାବେଥାନ୍‌ ସନେଟରେ ତାହା ଦେଖାଯାଏ ନାହିଁ । କାରଣ କବି ମାନସ ଏକ ଅନ୍ୟ ପୃଥିବୀରେ ଏକ ଅନୁପମ କାବ୍ୟିକ ଅନୁଭୂତିରେ 'ମଗ୍ନ' । ଗୁରୁପ୍ରସାଦ,

ଏଲିଜାବେଥ ଯୁଗର ସନେଟ୍‌ର 'କାପ୍ଲା' ନିଜର ବୋଲି ଗ୍ରହଣ କରିଛନ୍ତି । ସେ କେତେଦୂର ତାହାର ଆତ୍ମିକ ଭାବକୁ ଗ୍ରହଣ କରିଛନ୍ତି, ଆଲୋଚନା କରାଯାଇ ପାରେ । ଏହି କ୍ଷେତ୍ରରେ ସନେଟ-ଗୁଡ଼ିକର ଅନ୍ତଃ ବିକାଶ ଓ ପରିଣତି ଦିଗକୁ କ୍ରମ ସମ୍ପ୍ରସାରିତ ଗତି ମଧ୍ୟ ଲକ୍ଷଣୀୟ ।

ଗୁରୁପ୍ରସାଦଙ୍କ ସମୁଦାୟ ଦଶଟି ସନେଟକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ । ଏହି ବିଭାଜନ ସନେଟମାନଙ୍କର କାବ୍ୟିକ ସଫଳତା ଉପରେ ଆଧାରିତ । କାରଣ କେତେକ ସନେଟ୍ କଳାତ୍ମକ ଦୃଷ୍ଟିରୁ ଖୁବ୍ ସଫଳ ହୋଇଛନ୍ତି ଓ ଅନ୍ୟଗୁଡ଼ିକ ଅସଫଳ । ଏହା ଲକ୍ଷ୍ୟ କରିବାର କଥା ଯେ ସନେଟ୍‌ଗୁଡ଼ିକ ଭିତରେ ଦେଇ କୌଣସି ଏକ ଚିନ୍ତାର, ସୁସଂହତ କ୍ରମବିକାଶ ଘଟିପାରି ନାହିଁ । ପ୍ରଥମ ସନେଟ୍‌ରୁ ଦଶମ ସନେଟ ପର୍ଯ୍ୟନ୍ତ ଚିନ୍ତାଗତ ବିଭିନ୍ନତା ସୁସ୍ପଷ୍ଟ । ତେଣୁ କବି ଗୁରୁପ୍ରସାଦଙ୍କ କବି ମାନସର ବିକାଶ ଦିଗରେ କୌଣସି ବିଶେଷ ସୂଚନା ଏଥିରୁ ମିଳିପାରେ ନାହିଁ । ଚିନ୍ତାର ବିଭିନ୍ନତା, ଭାବଗତ ବୈଚିତ୍ର୍ୟ, ଏବଂ କେତେକ କ୍ଷେତ୍ରରେ ଅନୁଭୂତିର ଦୈନ୍ୟ, ସଚେତନ ପାଠକକୁ ଅସନ୍ତୁଷ୍ଟ କରାଏ । ତାଙ୍କର ଅନ୍ୟାନ୍ୟ କବିତା ପରିପ୍ରେକ୍ଷୀରେ ସନେଟ୍-ମାନଙ୍କର ମୂଲ୍ୟାୟନ କଷ୍ଟସାଧ୍ୟ ହୋଇଥାଏ କାରଣ ସନେଟଗୁଡ଼ିକର ଅନ୍ୟ କବିତାମାନଙ୍କ ସହ ଭାଷାଗତ ନିବିଡ଼ତା ବେଶ୍ ସାନ୍ଦ୍ର ଥିବା ସ୍ଥଳେ ଚିନ୍ତାଗତ ଐକ୍ୟ, ବିଶିଷ୍ଟତା ହେତୁ ସେତେଟା ସୁସ୍ପଷ୍ଟ ନୁହେଁ ।

ସନେଟ ୪, ୬, ୯, ୧୦, ହୋଇଛନ୍ତି ବେଶ୍ ଦୁର୍ବଳ । ସନେଟ–୪ର ଆଧାର ହେଉଛି ପ୍ରେମ । କିନ୍ତୁ ପ୍ରେମ ଏଠାରେ

ଅତ୍ୟନ୍ତ ଦେହଜ, ଦେହକୈନ୍ଦ୍ରିକ ଓ ଦେହରେ ସୀମିତ । ପ୍ରଥମ କ୍ୱାଟ୍ରେନଟି କେମିତି ଏକ ଉଚ୍ଛ୍ୱାସ,ନଥିଲା ଭାବ 'ସୃଷ୍ଟି କରେ । କିନ୍ତୁ 'ମନର ରକ୍ତମାଂସ ଚମର ପୋଷାକ' ନିସ୍ତେଜ ପୃଥିବୀର ଦେହ ଘୋଡ଼ି ହୋଇ ଶୋଇପଡ଼େ···' 'ଏକାକାର ସମସ୍ତର ଦେହ ଓ ଅଦେହ···' ଇତ୍ୟାଦିରେ ଲୁକ୍କାୟିତ ଦେହଜଭାବ ଦ୍ୱିତୀୟ କ୍ୱାଟ୍ରେନରେ ସ୍ପଷ୍ଟ ଭାବରେ ସମ୍ଭୋଗଧର୍ମୀ ଚିତ୍ରକଳ୍ପ 'ମୋ ଦେହର ସ୍ୱାସ୍ଥ୍ୟ ଆଜି ରକ୍ତ ମାଂସ ଚମର 'ପୋଷାକ / ଝସିପଡ଼ି ଉପେକ୍ଷିତ ବିସର୍ଜିତ ତୁମରି ଦେହରେ',ର ପୂର୍ବ ସୂଚନା ମାତ୍ର । ଏଥିରେ ରଚନା ଏକ ଉତ୍କଣ୍ଠା ଓ ପ୍ରତ୍ୟାଶାରେ ପରିଣତ ହୋଇଛି । ଅମୂର୍ତ୍ତତା (Abstraction) ଓ ଇଚ୍ଛା-ଚରିତାର୍ଥତା (wishfulfilment)କୁ ଦେଖ ତମେ ଦେହକୈନ୍ଦ୍ରିକ ତୃତୀୟ କ୍ୱାଟ୍ରେନରେ । 'ପୃଥିବୀର ଏ ଦେହରେ ଖୋଜି ଖୋଜି ମୁଁ ତୁମର ମନର ସନ୍ଧାନ / ଆଜି ହୁଏ ଉପଗତ ଉପକୂଳେ ତୁମର ଦେହର ।' ତାପରେ ତାଙ୍କର ଅନୁସନ୍ଧାନ କେବଳ ଦେହରେ, 'ରକ୍ତେ ମୋର ଦେହର ସୀମାରେ' ଏବଂ ଯେ ଦୃଷ୍ଟାନ୍ତ ଅମୂର୍ତ୍ତିର ରୂପଜ ପ୍ରକାଶ —'ଦେହ କାହିଁ ତୁମର ମନର ? କପ୍‌ଲେଟ ଆଣେ ଶେଷ ସ୍ୱର, ନିର୍ଦ୍ଦିଷ୍ଟ ଭାବରେ; 'ମୁଁ ତେଣୁ ତୁମର ଦେହ ଖୋଜେ ମୋର ଏ ଦେହରେ ସବୁ ମୋର ଆଶା' । ପ୍ରେମ ଏଠାରେ ଦେହାତୀତ ହେବାକୁ ଆଗ୍ରହୀ ମଧ୍ୟ ନୁହେଁ । ତେଣୁ ଚେଷ୍ଟାର ପ୍ରଶ୍ନ ଉଠୁଚି ବା କେଉଁଠୁ ? ଚିତ୍ରକଳ୍ପଗୁଡ଼ିକ ଦେହ ସମ୍ବନ୍ଧୀୟ ଓ ସମୁଦାୟ ସନେଟ୍‌ରେ 'ଦେହ'ର ପ୍ରୟୋଗ ବାରମ୍ବାର ଓ ଅର୍ଥପୂର୍ଣ୍ଣ । ଏହା ପାଠକର ରସବୋଧକୁ ସୀମିତ କରିଦିଏ ।

ସନେଟ୍‌ଟିରେ କାବ୍ୟିକ ଅନୁଭୂତିର ସରସତା ନାହିଁ, ସାନ୍ଦ୍ରତା ନାହିଁ କିମ୍ବା ସ୍ୱରର ନିବିଡ଼ତା ନାହିଁ । ପ୍ରଥମ କ୍ୱାଟ୍ରେନ୍‌

ଯେମିତି ଏକ ଅନିର୍ଦ୍ଧିଷ୍ଟ ଅସଲଗ୍ନତାର ସୂଚନାହୁଏ । 'ଫାଲ୍‌ଗୁନରେ ଥିଲକୃଷ୍ଣଚୂଡ଼ା'ରୁ 'ପୃଥିବୀର ଦେହେ ଢେଉଥିଲ ବନଗନ୍ଧର ପାଖୁଡ଼ା'ରେ ଥିବା କାବ୍ୟିକ ରସବୋଧ ଓ ରୋମାଣ୍ଟିକ୍ ଚେତନା, 'ପୃଥିବୀର ଦୟା କ୍ଷମା ସ୍ୱପ୍ନ·····, ଓ ଶାନ୍ତିଥିଲ ସୁଖଥିଲ·····'ସହ ସମ୍ପୂର୍ଣ୍ଣ ସମ୍ପର୍କହୀନ ମନେହୁଏ । କାରଣ ଏହା ଛନ୍ଦ ଓ ମିଳାପରେ ପଦ୍ୟ ନ ହୋଇ ଗଦ୍ୟ, ଏବଂ ଅନୁଭୂତିର ମାପ କାଠିରେ ଅପରିପକ୍ୱ କଳ୍ପନାର ଶବ୍ଦ ଯୋଜନା ମାତ୍ର । ଦ୍ୱିତୀୟ କ୍ୱାଟ୍ରେନର ଶବ୍ଦ ଯୋଜନା ସୁନ୍ଦର, ତୃତୀୟ କ୍ୱାଟ୍ରେନରେ କବିଙ୍କର ଅନ୍ୱେଷଣ (Quest) କେମିତି ବାକ୍‌ବିଳାସ-ପର୍ଯ୍ୟବସିତ ମନେ ହୁଏ । 'ତୁମକୁ' ସେ 'ଦୟା' 'କ୍ଷମା' 'ଆଶା' 'ସ୍ୱପ୍ନ'ରେ ସେ ଖୋଜୁଥିଲେ । ଏଠାରେ 'ଦୟା' 'କ୍ଷମା' ଓ 'ଆଶା ସ୍ୱପ୍ନ'ର emotive potency ପରସ୍ପର ଠାରୁ ଭିନ୍ନ, ଗୁଣାତ୍ମକ ଦୃଷ୍ଟିରୁ । ତେଣୁ 'ଅନ୍ୱେଷଣ'ର ନିଷ୍ଠା ଉପରେ ସନ୍ଦେହ ଆସେ । କାରଣ ଅନ୍ୱେଷଣ କ୍ରମଃ ଅପ୍ରମାଣ ମନେହୁଏ । ତା'ପରେ 'ତୁମର ଦେହରେ କାର୍ବ ଯୁଗଯୁଗ ମଣିଷର ସ୍ମୃତି'ରେ କବିଙ୍କର କେବଳ, ଏକ ଅନୁଭୂତିହୀନ, ନିଷ୍ଠାଶୂନ୍ୟ, ମହାଜାଗତିକ ଭାବର ପ୍ରକାଶ ଘଟିଛି । 'ତୁମେ'ରୁ 'ଯୁଗଯୁଗ ମଣିଷରସ୍ମୃତି' ପର୍ଯ୍ୟନ୍ତ ଗତି ସାବଲୀଳ ନୁହେଁ । ବରଂ 'ଗତି' ନାହିଁ ଆଦୌ ଏହା କେବଳ ଏକପ୍ରକାର ନିଷ୍ଫଳ ଆବେଗ ଓ ମିଳାପ୍ପନର ଜବରଦସ୍ତ ପ୍ରଚେଷ୍ଟା ! କପ୍‌ଲେଟରେ ନିଜସ୍ୱ ମୃତ୍ୟୁ କାମନା ଓ 'ତୁମକୁ' ସ୍ୱାଭାବିକ ପରିଣତି କ୍ଷୟ ସମ୍ବନ୍ଧୀୟ ଅବଧାରିତ ସତ୍ୟ ଚେତାଇ ଦେବାର ପ୍ରୟାସ—ସନେଟ୍‌ର ସ୍ୱତଃସ୍ଫୂର୍ତ୍ତ ସ୍ୱାଭାବିକ ଉପସଂହାର ଆଦୌ ନୁହନ୍ତି । ନିଷ୍ଠାର ଅଭାବ ଓ ଅନୁଭୂତିର ଦାରିଦ୍ର୍ୟ ଏ ସନେଟ୍‌କୁ ଏକ ବିକଳ ରୂପ ପ୍ରଦାନ କରିଚି ଯାହା । ସନେଟ୍-୧୦ର ପର୍ଯ୍ୟାଲୋଚନା ପୃଥକ୍ ହେବା ଉଚିତ୍ କାରଣ ଏହା ସନେଟ୍‌ରେ

ସଜ୍ଜା ଓ ଶବ୍ଦଗତ ଶୃଙ୍ଖଳାର ବନ୍ଧନ ଭିତରୁ ଅନେକାଂଶରେ ବହିର୍ଭୂତ । ଧାଡ଼ିଗୁଡ଼ିକ ବିଚ୍ଛିନ୍ନ ଓ ଭାବ ମଧ୍ୟ ପ୍ରଗଳ୍ଭ । "କାଳପୁରୁଷ"ର ଠିକ୍ ପୂର୍ବରୁ ରଚିତ ★ଏହା "କାଳପୁରୁଷ"ର ପ୍ରାକ୍‌କଥନର ଭ୍ରମ ସୃଷ୍ଟି କରେ । ଶବ୍ଦ ଯୋଜନାର ଲାଳିତ୍ୟ, ଭାବଗତ ଉଦ୍‌ବେଳତା, ଭାଷାଗତ ବଳିଷ୍ଠତା, ଓ ସର୍ବୋପରି ଏକ ଉତ୍କଣ୍ଠାପୂର୍ଣ୍ଣ ଉତ୍କର୍ଣ୍ଣଭାବ, ସନେଟ-୧୦ରେ ଲକ୍ଷଣୀୟ । ଏହାର ଦୀର୍ଘ ଧାଡ଼ିଗୁଡ଼ିକୁ ଅନାୟାସରେ ଭାଙ୍ଗି ପୁନଃସଜ୍ଜା କରାଯାଇପାରେ ଓ ଏହା କବିତାର ରସବୋଧରେ କିଛି ବାଧା ସୃଷ୍ଟି କରିବାର ସମ୍ଭାବନା ନାହିଁ । ତେଣୁ ଏହାକୁ ସନେଟ୍ ଆଲୋଚନାରେ ନିଆଯାଉ ନାହିଁ ।

ଏଥର ସଫଳ 'ସନେଟ୍'ଗୁଡ଼ିକ କଥା ଦେଖାଯାଉ । ସନେଟ୍-୧ର ପ୍ରଥମ କ୍ୱାଟ୍ରେନ୍ 'କ୍ଲାନ୍ତ' 'ସୁପ୍ତ' 'ଅନ୍ୟମନସ୍କତା' ଦେଇ ଏକ ସ୍ଥିର ଚିତ୍ରକଳ୍ପ (Static Image) ସୃଷ୍ଟି କରେ ସତ, କିନ୍ତୁ ଏକ ଆପାତ ଗତିହୀନତା ଏବଂ 'ତାଳର ଅନ୍ତରର ବଜ୍ରନ ଦେହ' ଚିତ୍ରକଳ୍ପର ସମ୍ଭାବ୍ୟ ସୃଷ୍ଟିହୀନତା ଓ ସ୍ଥିରତା ଦେଇ ଅବକ୍ଷୟ ପ୍ରଚ୍ଛନ୍ନ । ଦ୍ୱିତୀୟ କ୍ୱାଟ୍ରେନରେ ଏହି ଅବକ୍ଷୟ ବିସ୍ତୃତ ହୁଏ । ଶାଖ ତା 'ଭ୍ରମ ହେଲା', ଫୁଟି 'ଝଡ଼ିଗଲା', ବସନ୍ତର ଚାରି 'ଜଳ', 'ନିପଡ଼ି' 'ନଇଁଗଲା' । ଏଠାରେ ଅବକ୍ଷୟର ଚିତ୍ର ସମ୍ପୂର୍ଣ୍ଣ । ଅବକ୍ଷୟ ଏଠାରେ ଅତ୍ୟନ୍ତ ସତ୍ୟ, ସୁନିଷ୍ଠ ଜନ୍ମ 'ମ୍ଳାନ' ଓ ଅଳକ'ଚ୍ଛିନ୍ନ' । ପ୍ରଥମ କ୍ୱାଟ୍ରେନ୍‌ର 'ସୁପ୍ତ' ଓ 'କ୍ଳାନ୍ତ' ପ୍ରକୃତରେ ଏହି ଅବକ୍ଷୟର ପର ଅବସ୍ଥା । ଆପାତ ସ୍ଥିର ଚିତ୍ରକଳ୍ପ ଏଠି ପ୍ରକ୍ରିୟାର ପରିଣତି ଓ ଏକ ପ୍ରତିପାଦ୍ୟ ସତ୍ୟ । ତୃତୀୟ କ୍ୱାଟ୍ରେନ୍ ଏହି ଅବକ୍ଷୟର ସତ୍ୟକୁ ସର୍ବଂସାଧାରଣ ଓ ସର୍ବବ୍ୟାପୀ କରାଏ । ତେଣୁ

* 'ସମୁଦ୍ରସ୍ନାନ' (ଲର୍କ ବୁକ୍‌ସ)ର ପ୍ରଥମ ସଂସ୍କରଣ, ୧୯୬୦

'ସମୟର ହାତ ଆଙ୍ଗୁଳାଏ କାଟିକୁଟି' 'ମାଂସ ଚମ ଜ୍ୱର' ହୁଏ, 'ରୂପର ଜଙ୍ଗଲ' ମଣାଯାଏ 'ଏ ବାଲିରେ'।'କାଟିକୁଟି', ଓ 'ଜ୍ୱର'ରେ ଅବକ୍ଷୟର ପ୍ରକ୍ରିୟା ସୂକ୍ଷ୍ମ ଏବଂ ଜଙ୍ଗଲର ରୂପାନ୍ତର ବାଲିରେ । ଦେହ ସମ୍ବନ୍ଧୀୟ ଚିତ୍ରକଳ୍ପଗୁଡ଼ିକ ଏଣୁ ଅବକ୍ଷୟର ଉପଜୀବ୍ୟ । ତେଣୁ ଦେହୋତ୍ତର ହେବାର ପ୍ରଚେଷ୍ଟା ଏଣୁ ଦେହର ଉପରିସ୍ଥ ଭାବନାର ଜନ୍ମ ହୁଏ କପ୍‌ଲେଟ୍‌ରେ । ଏବଂ 'ମୁଁ ଯାହା ତୁମକୁ ପାଏ ପାଣି ହୋଇ ମନ ଆଉ ଦେହ'ର ନିଷ୍ଠା ସନ୍ଦେହରୁ ଊର୍ଦ୍ଧ୍ୱରେ । ସମ୍ଭବତଃ କପ୍‌ଲେଟ୍‌ର ଶେଷରେ ପ୍ରଶ୍ନବାଚକ ଚିହ୍ନ ମୁଦ୍ରା ପ୍ରମାଦ ଜନିତ* କାରଣ ପ୍ରାପ୍ତି ଏଠାରେ ଦେହୋତ୍ତର ଓ ସମୟୋତ୍ତର ମଧ୍ୟ । ପ୍ରଶ୍ନବାଚୀର ଆବଶ୍ୟକତା ଏଠାରେ କାହିଁ ?

ସନେଟ୍-୨ରେ ମଧ୍ୟ ପ୍ରେମ ଦେହୋତ୍ତର । ପ୍ରଥମ ଓ ଦ୍ୱିତୀୟ କ୍ୱାଟ୍ରେନ୍ ଏକ ଆକସ୍ମି ଓ ଆନୁଭବ ସୃଷ୍ଟି କରନ୍ତି । ସମସ୍ତ ପରିପ୍ରେକ୍ଷୀରେ ପ୍ରେମର ପରାକାଷ୍ଠା ଓ ତୀବ୍ରତା ପ୍ରକାଶ କରାଯାଇଛି । ଏଣୁ ବନ୍ଧୁର ସ୍ୱରୂପ ତୃତୀୟ କ୍ୱାଟ୍ରେନ୍‌ରେ ପ୍ରାଞ୍ଜଳ । 'ଅସରନ୍ତି ଏ ବାଟରେ ତୁମେ ଓ ମୁଁ ସମୟର ହାତ ମୋର ଭଲ ପାଇବାର ଯୁକ୍ତି ଆଉ ତମର ସନ୍ଦେହ ।' କପ୍‌ଲେଟ୍‌ରେ 'ଦେହ' ଏକ 'ସୀମିତ ପରିଧି'.'ଜନ୍ମ ମୃତ୍ୟୁ','ସମୟର କ୍ଷୟକ୍ଷତି' ଏସବୁ ଗତି-ଶୀଳ ଓ ସଂହାରାତ୍ମକ କିନ୍ତୁ ଏକମାତ୍ର ସତ୍ୟ-ସୀମିତ ଦେହ ଏ ସବୁରେ ସଂକ୍ରମିତ ହେଲାପରେ ମଧ୍ୟ-'ମୁଁ ତୁମକୁ ଭଲପାଏ' । ଭଲ ପାଇବାର ଏକାଗ୍ରତାହିଁ ସବୁ ମଧ୍ୟରେ ଧ୍ରୁବ । ଏଣୁ ସନେଟ୍‌ର କପ୍‌ଲେଟ୍‌ରେ କାବ୍ୟିକ ନିଷ୍ଠା ଓ ପ୍ରେମଗତ ପରାକାଷ୍ଠା ସନେଟ୍‌ର କ୍ୱାଟ୍ରେନ ମଧ୍ୟ ଦେଇ ଗତି କରିଥିବା ଅନ୍ତରଙ୍ଗ ସ୍ୱର (Intimate tone)ର ସ୍ପଷ୍ଟତା

---

* 'ସମୁଦ୍ରସ୍ନାନ' (ବ୍ଲକ'ବୁକ୍‌ସ୍)ର ପ୍ରଥମ ମୁଦ୍ରଣ, ୧୯୭୦

ଉପରେ ଭିତ୍ତି କରେ । ଏହା ଏକକ ସ୍ୱରର ଅନାବିଳ ଏକାଗ୍ରତା ଏବଂ ଐକାନ୍ତିକତା ପ୍ରତିପାଦନ କରେ ।

ସନେଟ-୩ର ପ୍ରଥମ କ୍ୱାଟ୍ରେନ ଅବକ୍ଷୟର ସମ୍ଭାବନା ଓ ସୂଚନା ଦିଏ । 'ସମୟ' ଏଠାରେ ଅବକ୍ଷୟର ସୂଚକ । କ୍ଷୟପ୍ରସ୍ତ ସମୟର ଶକ୍ତି ଅବଦମିତ ଓ କ୍ଷୟ ମଦେହାଶ୍ରିତ, ତେଣୁ ନଷ୍ଟିତ । ଦ୍ୱିତୀୟ କ୍ୱାଟ୍ରେନ ଏକ ଅନାଗତ ଭବିଷ୍ୟତର ଚିତ୍ର ଦିଏ । ଏଠାରେ ଲକ୍ଷ୍ୟ କରିବାର କଥା ଯେ କ୍ଷୟିଷ୍ଣୁ ପ୍ରକୃତି ନିଜେ ମଧ୍ୟ କ୍ଷୟରହିତ ନୁହେଁ, କ୍ଷୟମାଣ ଅବସ୍ଥା ନିଜେ ମଧ୍ୟ ପରିବର୍ତ୍ତନଶୀଳ, ପର ଝଡ଼ିଯିବା, ଦାନ୍ତ ଗଡ଼ିଯିବା ଭଳି ଏକ ବର୍ଦ୍ଧମାନ ଅବସ୍ଥା । ଏଇ ବର୍ଦ୍ଧମାନ ଅବସ୍ଥା ନିଜେ ନିଜକୁ ଗଡ୍ଡାଳିକା ପ୍ରବାହରେ କ୍ଷୟିଷ୍ଣୁ କରିଯାଏ । କ୍ଷୟ ହିଁ ସତ୍ୟ, କ୍ଷୟର ଅବୟବ ବା ସ୍ୱାକ୍ଷର ନୁହେଁ ଦ୍ୱିତୀୟ କ୍ୱାଟ୍ରେନ୍ ସେଇ ଅନାଗତ ଭବିଷ୍ୟତ ପୃଷ୍ଠଭୂମିରେ ଏକ 'କ୍ଷୟହୀନ ମୁଁ'ର ଉପସ୍ଥିତ ସୂଚାଏ । କପ୍‌ଲେଟ୍‌ରେ 'ମୁଁ' ତୁମକୁ ଖୋଜିଯିବ ଆଜପରି ତଥାପି ତଥାପି' ଲକ୍ଷଣୀୟ । ସମୁଦାୟ ସନେଟର ପୃଷ୍ଠଭୂମିରେ, ସମୟ ବର୍ତ୍ତମାନ ଠାରୁ ବେଶ୍ ଦୂରରେ, ଏକ ଅନାଗତ ଭବିଷ୍ୟତରେ, କିନ୍ତୁ ସମୟରେ ରହି, ସମୟୋତ୍ତର ହେବାର ବଳିଷ୍ଠ ଚେତନା କପ୍‌ଲେଟ୍‌ରେ ହିଁ ଲକ୍ଷଣୀୟ । କ୍ଷୟ ହିଁ ଏ ସଂକୀର୍ଣ୍ଣତାର କାରଣ, ତେବେ 'ଖୋଜିଯିବ··· ତଥାପି ତଥାପି' କାହିଁକି ? କ'ଣ ଲାଗି ଏ ଦୁରନ୍ତ ଜିଜ୍ଞାସା ଓ ଅନ୍ୱଧାନ ସଂଧାନ ? ନିଶ୍ଚୟ 'ପୃଥିବୀ' ନୁହେଁ, ଯେହେତୁ ତାହା କ୍ଷୟିତ ଓ ସଂକୀର୍ଣ୍ଣ । କାବ୍ୟିକ ଆବେଗ ଓ ଦେହରୁ ଊର୍ଦ୍ଧ୍ୱଗତ ସୁସ୍ପଷ୍ଟ ।

ସନେଟ-୫ ର କଳ୍ପନାର ଚମତ୍କାରିତା ଚମକ୍ ଆଣିଦିଏ । ପ୍ରଥମ କ୍ୱାଟ୍ରେନ୍ ଏକ ନିର୍ଜୀବ ପୃଥିବୀର ଚିତ୍ର ଦିଏ । ଏଥି ଜୀବନ ହୀନତା ଅନେକ ଗୁଡ଼ିଏ ନାସ୍ତିବାଚକ କ୍ରିୟା

ପଦ ଦେଇ ପ୍ରତିପାଦିତ । ଚିନ୍ତା କଲେ ଏଗୁଡ଼ିକ ବେଶ୍ ରୋମାଣ୍ଟିକ୍ ଓ ଇଂଗିତଧର୍ମୀ । ସବୁ ଜୀବନଘାତୀ ଚିତ୍ରକଳ୍ପଗୁଡ଼ିକ ବିକଳ୍ପରେ ଏକ ଉଜ୍ଜ୍ୱଳ ଜୀବନପ୍ରୀତିର ଆଶ୍ରୟ ଦିଅନ୍ତି । କାବ୍ୟିକ ଚମତ୍କାରିତା, 'ସମସ୍ତସ୍ପୃଅରେ ନାହିଁ ଜୀବନର ଉଙ୍ଗାରତା' ରେ ଅତ୍ୟନ୍ତ ସୁନ୍ଦର । ଆକାଶ ପୃଥିବୀ, ମଣିଷ ଓ ଶାମୁକା ଦେଇ 'ସମସ୍ତସ୍ପୃଅ' ପର୍ଯ୍ୟନ୍ତ ନିଷ୍ପ୍ରାଣତାର ଗତି ବେଶ୍ ସହଜ ଓ ସାର୍ବଜୀନ । ଏଇ ପୃଷ୍ଠଭୂମିରେ ଦ୍ୱିତୀୟ କ୍ୱାଟ୍ରେନ୍ ଏକ ଜଡ 'ଭ୍ରମର ଦେହର ନିଘ୍ରୁଟିଆ ନଈବାଲି-' ଏବଂ 'ଦେଖ ମୋ ଦେହର କଅାଖି' ମଧ୍ୟରେ ଓତଃପ୍ରୋତ ସମ୍ବନ୍ଧର ସୂଚନା ଦିଏ, ଯଦିଓ 'ଜୀବନଘାତୀତା' କୌଣସି ପ୍ରକାରର ଖୋଲାଖୋଲି ସଂବଂଧର ପ୍ରତିବଂଧକ ହୋଇଛି । ତୃତୀୟ କ୍ୱାଟ୍ରେନ୍ ପ୍ରଥମ କ୍ୱାଟ୍ରେନ୍‌ର ବିରୁଦ୍ଧ ଚିତ୍ର ଦିଏ । ଏହି ବିରୁଦ୍ଧ ଚିତ୍ର କିନ୍ତୁ ସର୍ତ୍ତଶୂନ୍ୟ ନୁହେଁ । ଏଠାରେ କେବଳ ପ୍ରାଣ ପ୍ରାଚୁର୍ଯ୍ୟର ଚିହ୍ନ । କପଲେଟ୍ ଆଣେ ଜୀବନ୍ୟାସ ଜୀବନ ଘାତୀତାରେ ଏବଂ ପ୍ରମାଣ କରେ ଯେ ଜୀବନହିଁ ପ୍ରେମ, 'ତୁମେ ଯଦି ଭଲପାଅ ତୁମେ ଆଜ ଭଲ ପାଅ' । ଏ ପ୍ରେମ ଦେହୋତ୍ତର କାରଣ କପ୍‌ଲେଟ୍ ପୂର୍ବରୁ ଦୈହିକ ଚିତ୍ରକଳ୍ପ ( Physical Image ) ସବୁ ବେଶ୍ ବଳିଷ୍ଠ ଭାବରେ ପ୍ରକାଶ ପାଇଛନ୍ତି, କିନ୍ତୁ ନିଷ୍ପ୍ରାଣ ରୂପରେ । ତେଣୁ ଦେହ ନୁହେଁ ପ୍ରାଣହିଁ ସତ୍ୟ ଓ ପ୍ରାଣହିଁ ପ୍ରେମ ଓ ପରିପୂର୍ଣ୍ଣତା । ଏକ 'ଅବସ୍ଥା' ଓ ଏକ 'ସଂଭାବନା' ଭିତରେ କନ୍‌ଟ୍ରାଷ୍ଟ (contrast) ଅତି ପ୍ରାଞ୍ଜଳ ଓ କାବ୍ୟିକ ଅନୁଭୂତି ବେଶ୍ ପ୍ରାଣବଂତ ।

ସନେଟ୍-୭ର ଚିତ୍ରକଳ୍ପଗତ ଦୁର୍ବଳତା ସନେଟ୍‌କୁ ଅପରିପକ୍ୱ ମନେ କରାଏ । 'ପୃଷ୍ଠା', 'ଚିଠି', 'ଖାତା', 'କାଗଜ', 'ଲେଟା' 'ଛପା' 'ଗ୍ଲେଟ ଗ୍ଲେଟ ଅକ୍ଷର', 'ଯମକ', 'ଅନୁପ୍ରାସ', 'ଅଳଙ୍କାର',

'ବର୍ତ୍ତନା ଗୃହୁଣ', 'ବ୍ୟାକରଣ', 'ଯନ୍ତ୍ରପାତ', 'ସମସ୍ତର ସୃଷ୍ଟା', ଇତ୍ୟାଦି ଉପମା ଏକ ଅତ୍ୟନ୍ତ ସୀମିତ ଅନୁଭୂତି, ଓ ଚିନ୍ତାଗତ ଦୈନ୍ୟର ସୂଚନା ଦିଅନ୍ତି । ଏପିକ୍ (Epic) ଢାଞ୍ଚାରେ ଗୋଟିଏ ଇମେଜ୍ର ସଂପ୍ରସାରଣ କରୁ ଏକ ଅନାବଶ୍ୟକ ସ୍ତର ପର୍ଯ୍ୟନ୍ତ ଗତି କରେ, ଯେଉଁଠି ଇମେଜ ଅନୁଭୂତି ପ୍ରକାଶରେ ଏକ ପ୍ରତିକୂଳ ଅବସ୍ଥା ସୃଷ୍ଟି କରୁଛି । ଇମେଜ୍ ବାହକ (vehicle) ନ ହୋଇ ବଣ୍ୟ ଉଂଚତା ସୃଷ୍ଟି କରେ । ଇମେଜ୍ରେ ମୌଳିକତାର ଅଭାବ ଓ ଲାକତ୍ୟମାନତା ସୁସ୍ପଷ୍ଟ । କେବଳ କପ୍ଲେଟ୍ର ଅନ୍ତନିହିତ ସ୍ୱର ଏ ସନେଟ୍ର ଏକମାତ୍ର ରକ୍ଷା କବଚ । ଏହି ସ୍ୱର ମଧ୍ୟ ଦେହାତୀତ ।

ସନେଟ୍-୮ ର ପ୍ରଥମ କ୍ୱାଟ୍ରେନ୍ରେହିଁ ଏ contrastର ଆରମ୍ଭ । 'ଅରୁନ୍ଧତୀ', 'ସପ୍ତର୍ଷି', 'ସ୍ୱାତୀ', 'ଶତଭିଷା', ଏକ ସ୍ଥିର, ପରିବର୍ତ୍ତନହୀନ ସ୍ଥାୟିତ୍ୱର ନିୟାମକ । ଏବଂ 'କାମନା', 'ଆଶା', 'ସକଳ ପିପାସା', ଏହାର ବିରୁଦ୍ଧାତ୍ମକ ଶବ୍ଦ ଦିଅନ୍ତି । ଏଠାରେ ଉପଜୀବ୍ୟ ପ୍ରେମ ନୁହେଁ, ଶାନ୍ତି । ଦ୍ୱିତୀୟ କ୍ୱାଟ୍ରେନ୍ରେ ମଧ୍ୟ 'ଶରନ୍ତନ' ଓ 'ସ୍ୱପ୍ନମାନ'ର ସାକାର ଶବ୍ଦ ଦିଏ, 'କେନ୍ଦ୍ର ଯହି ସ୍ଥିର ରହେ, ସ୍ଥିର ରହେ ବାଟ ଓ ଅବାଟ'ର ଅବତାରଣା କରେ । ତୃତୀୟ କ୍ୱାଟ୍ରେନ୍ କାବ୍ୟିକ ଅନୁଭୂତି ଓ ଚେତନଶୀଳତାର ଅନୁଶୀଳନ କରେ । କପଲେଟ୍ର ସ୍ୱର ବିଫଳତାର (failure) କରୁ ହତାଶାର (despair) ନୁହେଁ । କାରଣ ମୁକ୍ତି ପାଇଁ ଅନ୍ୱେଷଣ(Quest) ସରିନାହିଁ । ଏ ବ୍ୟାକୁଳତା ହିଁ ଏ ସନେଟ୍ରେ ବୈଷମ୍ୟ । ଏ ସନେଟ୍ରେ ଦେହଜ ଭାବ ନାହିଁ ।

ସନେଟ୍-୯ ର ପ୍ରଥମ ଓ ଦ୍ୱିତୀୟ କ୍ୱାଟ୍ରେନ୍ ସ୍ୱପ୍ନର ଚିତ୍ରକଳ୍ପରେ ପରିପୂର୍ଣ୍ଣ । ଦ୍ୱିତୀୟ କ୍ୱାଟେନ୍— ଯେହେତୁ ତାହା

ବ୍ୟକ୍ତିଗତ ଅସ୍ପଷ୍ଟ ଭାବ ପ୍ରକାଶ କରେ, —ସଂବେଦନଶୂନ୍ୟ ଓ ଭାବ ପ୍ରକାଶରେ ନିବଦ୍ଧ । କିନ୍ତୁ ପ୍ରଥମ କ୍ୱାଟ୍ରେନ୍ 'ତୁମ' ପୃଥ୍ୱୀର ଅସ୍ପଷ୍ଟ ସ୍ୱଭାବ ହିଏ । ତେଣୁ କେତେକାଂଶରେ ତାହା ଆଦର୍ଶାୟିତ (Idealised) ଏବଂ ବକ୍ର(indirect)ଅଭୂତ ସମ୍ଭାବନା,ଯଥା ତୁମ ଆଖି ତାର ନଗାନ୍ତର ନିସ୍ତେଜ ତାରାରେ ରୂପାନ୍ତରିତ, ବା ଓଠର ଟ୍ରୁଲିପ ଫୁଲକଣ......ବସନ୍ତର ଫୁଲର ଗହଣ...... ଇତ୍ୟାଦି ଅସ୍ପଷ୍ଟ ପ୍ରଭାବକୁ ଖୁବ୍ ଶାଣିତ ଭାବରେ ପ୍ରକାଶ କରନ୍ତି । ସଂଭାବନାର ରଙ୍ଗୀନ ଓ ରୋମାଣ୍ଟିକ୍ ପୃଷ୍ଠଭୂମିରେ ଅସ୍ପଷ୍ଟ ସୁସ୍ପଷ୍ଟ (definite) ହୁଏ । ତୃତୀୟ କ୍ୱାଟ୍ରେନ୍‌ର ନାଟକୀୟତା ଲକ୍ଷଣୀୟ । ଏଠାରେ ଅସ୍ପଷ୍ଟ ନିଷ୍ପାଣ ଏକ କାଳ୍ପନିକ ପ୍ରତିକୂଳ ପରିବେଶର ଶବ । ତଥାପି ବିରହ ଅବଦମିତ ଓ ଅପ୍ରଶମିତ,କାରଣ ଏହା ଝଙ୍କୃତ 'ଶରଦିନ ମୋର ଠେ ପ୍ରେମଗତ ନାଟକ ଓ କବିତା ଲେଖାରେ' । ଏଇଟି ମନେହୁଏ; ହୁଏତ ବନ୍ଦେ ଏକ କାଳ୍ପନିକ ବିଳାସ ଯାହା ଅନୁଭୂତିହୀନତାରୁ ପ୍ରସୂତ କିମ୍ବା ଏକ ଶସ୍ତା ରୋମାଣ୍ଟିକ୍ ବ୍ୟାଧି- ଯାହା ପ୍ରଶମିତ ହେବାର ନୁହେଁ । କିନ୍ତୁ ଏ ପ୍ରଶ୍ନର ସମାଧାନ ଘଟିଛି କପ୍‌ଲେଟ୍‌ରେ 'ତୁମର ଦେହରେ' ବିବର୍ଣ୍ଣ ବସନ୍ତ ପୁଃ ଓ ସମସ୍ତ ହନୁମାଣ, 'ଯାଏ ପଡ ଝଡ଼ି ଦେଇ' । ।ଏହା ଦେହର ନଶ୍ୱରତା ଧରିଥାଇ ହିଏ ଅଥଚ 'ଆଜି ମୋର ଏଦେହରେ ତୁମର ଏ ବସନ୍ତର ରକ୍ତପଦ ଜମିନାହିଁ ମୋଟେ କମିନାହିଁ', ଏକ ସ୍ଥାୟୀ, ପରିବର୍ତ୍ତନହୀନ ଆବେଗ-ମୟତାର ଶବ ହିଏ । ଯେହେତୁ ଦେହର ଅସ୍ପ ଏ ପ୍ରକାର ଆବେଗକୁ ପ୍ରତିହତ କରିପାରି ନାହିଁ ତେଣୁ ମନେହୁଏ ଆବେଗ ଦେହୋତ୍ତର ।

ଏହି ଆଲୋଚନାରୁ ଲକ୍ଷ୍ୟ କରଯାଏ ଯେ ଗୁରୁପ୍ରସାଦଙ୍କ ସନେଟ ଗୁଡ଼ିକ ଅଧିକ ପରିମାଣରେ ଆବେଗ ପ୍ରସୂତ । ବୁଦ୍ଧି ଓ ମୁକ୍ତିପ୍ରବଣତାର ପ୍ରୟୋଗ ପରିମିତ ଓ ସନେଟ୍ ଗୁଡ଼ିକ ପାଠକର ହୃଦୟକୁହିଁ ପ୍ରଥମେ ସ୍ପର୍ଶ କରନ୍ତି । କିନ୍ତୁ ସନେଟ୍‌ର ଅନୁଭୂତି ଗୁଡ଼ିକର କ୍ୟାନ୍‌ଭ୍ୟାସ୍ ନିଶ୍ଚୟ କ୍ଷୁଦ୍ର । ଏଥିରେ କାବ୍ୟିକ ଅନୁଭୂତିର ନିବିଡ଼ତା ଅଛି ସତ, କିନ୍ତୁ ବୈଚିତ୍ର୍ୟ ନାହିଁ । ଅନୁଭୂତି ସୀମିତ, ଓ ପ୍ରେମ— ଦେହ ଓ ଦେହୋତ୍ତର ଆବେଗ ସମ୍ବଳିତ ଓ ହୃଦୟ କୈନ୍ଦ୍ରିକ—ହିଁ ମୁଖ୍ୟ ଅନୁଭୂତି । 'ସମୟ' ଓ 'ମୃତ୍ୟୁ'ର ଅବତାରଣା 'ପ୍ରେମ' ପରିପ୍ରେକ୍ଷୀରେ ମାତ୍ର । 'ସମୟ' ପ୍ରେମର ଅବିନଶ୍ୱରତା ପ୍ରତିପାଦନ ନିମନ୍ତେ contrast ରୂପେ ବ୍ୟବହୃତ । ସନେଟ୍ ଗୁଡ଼ିକର ପୃଷ୍ଠଭୂମିରେ ଅଛି ଏକ ଆଚ୍ଛନ୍ନ ସକରୁଣ ଭାବ । ତେଣୁ ଏକକ ସ୍ୱର, ଏକ ନିର୍ଜନ ଓ ଶବ୍ଦହୀନ ପୃଷ୍ଠଭୂମିରେ ଅତ୍ୟନ୍ତ ସ୍ପଷ୍ଟ । ଇମେଜ୍ ଗୁଡ଼ିକ 'ନଥର' ଚିତ୍ର ଭଳି । ସ୍ୱପ୍ନିଷ୍ଟ ପ୍ରତିମା ଏତେଧୀର ଯେ ତାହା ନିଦେ । ମନେ ହୁଏ, ଏହି ଆଚ୍ଛନ୍ନ ସକରୁଣ ଭାବ କେବଳ ବ୍ୟଞ୍ଜନାତ୍ମକ ନୁହେଁ, ଏହାହିଁ ସନେଟର ଆତ୍ମା । ଇମେଜ୍ ଗୁଡ଼ିକ ପ୍ରାୟତଃ ପରମ୍ପରା-ଗତ ଓ ପ୍ରାକୃତିକ ମଧ୍ୟ । ତାରା,ବାଲି,ଫୁଲ, ଶିଶିର, ଆଷାଢ଼, ଆକାଶ, କୁହୁଡ଼ି,ମେଘ, ପୃଥିବୀ, ଶାମୁକା, ଝଡ଼, ରାତି, ଉର୍ବରତା,ଆଖିବ୍ୟଥା, ଶ୍ରାବଣ, କୃଷ୍ଣଚୂଡ଼ା, ବଉଦ, ସମୟ, ଗନ୍ଧ, ଅରୁନ୍ଧତୀ, ସପ୍ତ-ଋଷି ସ୍ୱାତି, ଶତାବ୍ଦୀ, ପଦ, ଅସ୍ପଷ୍ଟଶବ୍ଦ, ମର୍ମରିତ ନିଶ୍ୱାସ, କୁହୁଡ଼ି ଓଢ଼ଣୀ,ଫୁଲର ଗହଣା,ମୂର୍ଚ୍ଛ ବିଗନ୍ତ ସ୍ତୂପ ହୋଇଛନ୍ତି ମୁଖ୍ୟ ବା ପ୍ରାପ୍ତ ସମୁଦାୟ ଇମେଜ୍, ସନେଟ ଗୁଡ଼ିକରେ ।

ଏଠାରେ ଲକ୍ଷ୍ୟ କରିବାର କଥା ଯେ ଏହି ପାରମ୍ପରିକ ଇମେଜ ମାନେ ପ୍ରତ୍ୟେକ Emotive ଓ potent । ଏମାନେ ଏକ ନିର୍ଦ୍ଦିଷ୍ଟ ଭାବ ଓ ମୂଲ୍ୟବୋଧର ପରିପୂରକ । ତେଣୁ ଚତାନୁଗତିକ ନହୋଇ ଏମାନେ ପ୍ରକାଶ ଧାରାରେ ଉଜ୍ଜ୍ୱଳତା ଆଣି ଦିଅନ୍ତି । ପ୍ରେମ ମଧ୍ୟ ଏକ ଚିରନ୍ତନ ଭାବବୋଧ । ତେଣୁ ଇମେଜ-ମାନେ ଭାବ ଓ ପ୍ରକାଶଧାରା ମଧ୍ୟରେ ସନ୍ତୁଳନ ରକ୍ଷା କରନ୍ତି । କ୍ଷୟ ସମ୍ବନ୍ଧୀୟ ଇମେଜ୍ ଗୁଡ଼ିକରେ ଗୁରୁପ୍ରସାଦଙ୍କ ମୌଳିକତା ଉଜ୍ଜ୍ୱଳ । ଇମେଜ ଗୁଡ଼ିକ ମଧ୍ୟରୁ ଅଧିକାଂଶ ସମୟ ସହ ଓତଃପ୍ରୋତ ଭାବେ ସମ୍ପର୍କିତ ।



# ଗୁରୁପ୍ରସାଦଙ୍କ କବିତା ଓ 'ମେଜର ପୋଏଟ୍ରି'

ତାରିଣୀ ଚରଣ ଦାସ

କବି ଗୁରୁପ୍ରସାଦ ଯେଉଁ ଇଲିଅଟ୍‌ଙ୍କ ଦ୍ୱାରା ଉଦ୍‌ବୁଦ୍ଧ ତାଙ୍କର ଭାଷାରେ କହିବାକୁ ଗଲେ—"Immature poets imitate, mature poets steal; bad poets deface what they take, and good poets make it into some thing better, or at least some thing different . [ Selected Essays, Faber and Faber . ]

ଏଣୁ 'କାଳପୁରୁଷ' ବିଷୟରେ କେଉଁ କଥାଟି ପ୍ରକୃତରେ ପ୍ରଯୁଜ୍ୟ ତାହା ପାଠକେ ନିଜେ ବିଚାର କଲେ ଭଲ ।

ସଚ୍ଚିଦାନନ୍ଦ ରାଉତରାୟ ସ୍ୱଚ୍ଛନ୍ଦତାବାଦ, ପ୍ରଗତିବାଦ ଓ ପ୍ରୟୋଗ-ବାଦର ପତାକା ନେଇ ୧୯୪୭ରେ 'ପାଣ୍ଡୁଲିପି' ପ୍ରକାଶିତ କରି ଓଡ଼ିଆ କାବ୍ୟ କ୍ଷେତ୍ରରେ ନୂତନ ପ୍ରାଣର ସଞ୍ଚାର କରିଥିଲେ ସତ; କିନ୍ତୁ ସେ ଜୀବନାନନ୍ଦ ଦାସଙ୍କ ପ୍ରଭାବରୁ ମୁକ୍ତ ହୋଇପାରିନଥିଲେ । ତେବେ ସେ ଇଲିଅଟ୍ ପ୍ରଭାବିତ ବିଷ୍ଣୁ ଦେଙ୍କ ଠାରେ ଅମ୍ବ ବିନୟ ଭରି ନଥିଲେ । କବି ଗୁରୁପ୍ରସାଦ ଇଂରେଜୀ ସାହିତ୍ୟର ଛାତ୍ର ଓ ଅଧ୍ୟାପକ ହିସାବରେ ଟି. ଏସ୍. ଇଲିଅଟ୍‌ଙ୍କୁ ଓଡ଼ିଆରେ ପରିବେଷଣ କଲେ କବିତା ମାଧ୍ୟମରେ । 'ନୂତନ କବିତା'ର କେତୋଟି କବିତା ଏବଂ 'କାଳପୁରୁଷ' ପ୍ରଭୃତି ତାଙ୍କର ବଳିଷ୍ଠ ସ୍ୱାକ୍ଷର । ଯେହେତୁ 'କାଳପୁରୁଷ' "ୱେଷ୍ଟଲେଣ୍ଡ"ର ଏକ ଓଡ଼ିଆ ଏଡ଼ିସନ ମାତ୍ର । ବୈଦେଶିକ ଶୈଳୀର ନୂତନ ପ୍ରୟୋଗ ହେଲେ ହେଁ କବିତାଟି 'ୱେଷ୍ଟଲେଣ୍ଡ'ର ଅନୁକରଣ, ଅନୁସରଣ ଉପରେ ନିର୍ଭରଶୀଳ—ଏଥିରେ Something new କିମ୍ବା Differentର ସୁର ଅତ୍ୟନ୍ତ କ୍ଷୀଣ ।

ରହିଲା ଅନ୍ୟାନ୍ୟ କବିତା । ଏଗୁଡ଼ିକରେ ଇଲିଅଟ୍‌ଙ୍କ କଥନ ('Poetry should be felt before it is understood')ର ପୂରାପୂରି ସଫଳ ପ୍ରୟୋଗ କରାଯାଇଛି । କବି ଗୁରୁପ୍ରସାଦଙ୍କ କବିତାରେ ବଳିଷ୍ଠ ସଂପ୍ରେଷଣା ବା ପ୍ରେଷଣୀୟତା ( Communicability ) ରହିଛି । ଏହା କବିତା ବୁଝିବା ଆଗରୁ ଗଭୀର ଭାବବୋଧ ସ୍ତରରେ ପାଠକକୁ ଉପନୀତ କରାଇ ପାରୁଛି ଏବଂ ସେ ବୁଝିବା ନବୁଝି, ଗୁରୁପ୍ରସାଦଙ୍କ କବିତା ତାକୁ ନିବିଡ଼ତର ଭାବରେ ଅନୁଭୂତ କରାଇ ପାରୁଛି । ଅତଏବ ଅର୍ଥବୋଧ ପୂର୍ବରୁ ଭାବବୋଧ ଆଡ଼କୁ ଟାଣି ନେବା ଅପୂର୍ବ ଦକ୍ଷତା ଏବଂ ପରଂପରା, ପ୍ରତୀକ, ରୂପକଳ୍ପ, ଆଦ୍ୟବିମ୍ବ ( ଆର୍କିଟାଇପ୍ ) ଓ ଦନ୍ତକଥାମାନଙ୍କର ଐନ୍ଦ୍ରଜାଲିକ ବାତାବରଣ ଭିତରେ ଆନ୍ତରିକ ଭାବକୁ ଉଦ୍‌ବୁଦ୍ଧ କରିବା କ୍ଷମତା ହେଲା ତାଙ୍କ କବିତାର ସ୍ୱକୀୟ ବୈଶିଷ୍ଟ୍ୟ । କବିଙ୍କ କାବ୍ୟସମ୍ଭାର ବିଶେଷ ନ ହେଲେହେଁ ତାଙ୍କ କାବ୍ୟ ଶୈଳୀରେ ସ୍ୱାତନ୍ତ୍ର୍ୟ ଅବଶ୍ୟ ପରିଲକ୍ଷିତ ହୁଏ ।

ସଚ୍ଚି ରାଉତରାୟ ରୂପକଳ୍ପର ପ୍ରୟୋଗ ପ୍ରଥମେ କରିଥିଲେହେଁ ଦନ୍ତକଥା, ପୌରାଣିକ ପ୍ରତୀକ, ଖଣ୍ଡିତ ରୂପକଳ୍ପ, ଅସମ୍ବଦ୍ଧତା ଓ ସଂବେଗ-ପାରମ୍ପର୍ଯ୍ୟ ପ୍ରଭୃତିର ପ୍ରୟୋଗ ପ୍ରଥମ କରି ଆମେ ଗୁରୁପ୍ରସାଦଙ୍କଠାରେ ଦେଖିଥାଉଁ । ଏହାଙ୍କପରେ ଫ୍ରାନ୍ସ ପ୍ରତୀକବାଦୀମାନଙ୍କ ବ୍ୟକ୍ତିଗତ ପ୍ରତୀକର ପ୍ରୟୋଗ, ବ୍ୟାକରଣିକ ଉଲ୍ଲଙ୍ଘନ, ଯୌନ ପ୍ରତୀକ ପ୍ରଭୃତି ରମାକାନ୍ତଙ୍କଠାରେ ଏବଂ ପରଂପରା, ଆଦ୍ୟବିମ୍ବ, ଲୋକଗାଥା ଓ ବାକ୍ୟସ୍ପନ୍ଦର ସମୀକରଣ ସୀତାକାନ୍ତଙ୍କଠାରେ ଦୃଷ୍ଟ ହୁଏ । ଏଣୁ ଗୋଟିଏ ବାକ୍ୟରେ କୁହାଯାଇପାରେ ଯେ 'ନୂତନ କବିତା'ର ପ୍ରବର୍ତ୍ତକ ଗୁରୁପ୍ରସାଦଙ୍କ ସାଧନା ଓ ସିଦ୍ଧି ସୀମିତ ହେଲେହେଁ ତାଙ୍କ ପ୍ରୟାସ ଓ ପ୍ରୟୋଗର ଐତିହାସିକ ମୂଲ୍ୟ ରହିଛି—ଏଥିରେ ସନ୍ଦେହର ଅବକାଶ ନାହିଁ । ଏକ ପକ୍ଷରେ ତାଙ୍କ କାବ୍ୟିକ ପ୍ରୟୋଗ ସଚ୍ଚି ରାଉତରାୟଙ୍କ ପ୍ରଭାବରୁ ଓଡ଼ିଆ କବିତାକୁ ମୁକ୍ତ କରିଛି ଏବଂ ନୂତନ କବିଗଣଙ୍କୁ ସୃଜନକ୍ଷମ କଳ୍ପନାରେ ପ୍ରେରଣା ଦେଇ ଆସିଛି ।

'ସମୁଦ୍ରସ୍ନାନ' ପଢ଼ିବା ପରେ କବିଙ୍କ ପ୍ରତିବଦ୍ଧତା ବିଷୟରେ କେତେକ ପ୍ରଶ୍ନ ଉଠେ । ତାଂକ କବିତାରେ ବ୍ୟବହାର୍ଯ୍ୟ ଶବ୍ଦ ଭିତରୁ

'ଟୋଲସ୍ତନ' ଓ 'ବାଲ୍‌ଟର'ର ବହୁଳ ପ୍ରୟୋଗ ଦେଖାଯାଏ । ଏହାକୁ ଶବ୍ଦଗତ ପ୍ରତିଚ୍ଛବି କୁହାଯାଇପାରେ । କିନ୍ତୁ 'ନଟପାତ ନଟପୋଣ୍ଡି' 'ଟୋକର ଗଣେଶ' ଓ 'ପ୍ରିୟନାୟିକା' ପ୍ରଭୃତି କବିତାରେ ଇଲିଅଟ୍‌ଙ୍କ ପରି ଆଧୁନିକ ଜୀବନର ଅନ୍ତଃସାରଶୂନ୍ୟତା, କୃତ୍ରିମତା ଏବଂ ଅସଫଳ ପ୍ରେମ-ଜନିତ ନିରାଶା ପ୍ରତି ପ୍ରତିବଦ୍ଧତା ସୂଚିତ ହୁଏ ।

କେହି କେହି ଆଲୋଚକ ଗୁରୁପ୍ରସାଦଙ୍କ କବିତା ଆଲୋଚନା କଲାବେଳେ ମେଜର ପୋଏଟ୍ କଥା ଉଠାଇଥାନ୍ତି । ଓଡ଼ିଶା କିମ୍ବା ଭାରତରେ ବର୍ତ୍ତମାନ ମେଜର ପୋଏଟ୍ କାହାନ୍ତି ? ରବୀନ୍ଦ୍ରନାଥଙ୍କ ପରେ ପରେ ସମନ୍ୱୟ ଓ ସ୍ୱୀକରଣରେ ମାତ୍ର ଏତେ ନାମ ଯେ ଭାରତୀୟ କବି ପାଶ୍ଚାତ୍ୟ ଜଗତକୁ କିଛି ଗୋଟାଏ ନୂଆ କରି ଦେଖାଇ ପାରୁ ନାହିଁ । ଏହା କେବଳ ଅନୁଭୂତିଗତ ତୀବ୍ରତା, ଅଭିବ୍ୟକ୍ତିଗତ ସଫଳତା ଏବଂ ଅନ୍ତଃଚେତନାର ପରିପକ୍ୱତା ଉପରେ ନିର୍ଭର କରେ । କିନ୍ତୁ ସମସ୍ତେ ଧାଇଁଛନ୍ତି ପଶ୍ଚିମକୁ ମୁହଁ କରି ଇଲିଅଟ୍ ଓ ପାଉଣ୍ଡଙ୍କୁ ଗୁରୁ ମନେକରି । କେତେକ କବିଙ୍କଠାରେ ସ୍ଥାନେ ସ୍ଥାନେ ନୂତନତ୍ୱ ଦୃଷ୍ଟି ହେଲେହେଁ ପରିପକ୍ୱତା ଆଉରି ଆସିପାରିନାହିଁ । ମୋ ଜାଣିବାରେ ମେଜର ପୋଏଟ୍‌ର ଅଧିକାଂଶ ନିଜସ୍ୱ ଏବଂ ଅଧିକାଂଶ ନୂତନ ହେବା ଦରକାର—ଯାର ପ୍ରଭାବ ଯୁଗ ଯୁଗ ଧରି ସ୍ଥିର ନହେଲେ ହେଁ ଅନ୍ତତଃ ସମସାମୟିକ ଭାଷା ଓ ସାହିତ୍ୟମାନଙ୍କ ଉପରେ ପଡ଼ିବା ଆବଶ୍ୟକ । ଏଣୁ କବି ଅନ୍ୟର ପ୍ରଭାବକୁ ଯେତେଶୀଘ୍ର ଅସ୍ୱୀକାର କରି ସ୍ୱକୀୟ ପ୍ରଭାବ ଅନ୍ୟ ଉପରେ ବିସ୍ତାର କରିବା ଦକ୍ଷତା ହାସଲ କରିପାରିବ ସେ ସେତେ ଶୀଘ୍ର ମେଜର ପୋଏଟର ପ୍ରାକ୍‌ଲକ୍ଷଣ-ଯୁକ୍ତ ମାତ୍ର ହୋଇ ପାରିବ । କିନ୍ତୁ ଏହା ବ୍ୟତୀତ ତାର କେତେକ ସ୍ଥିର ମୂଲ୍ୟବୋଧ-ସମ୍ବନ୍ଧୀ କବିତା ମଧ୍ୟ ରହିବା ଆବଶ୍ୟକ—ଯାହାକୁ ବ୍ୟଷ୍ଟି ଓ ସମାଜ ତିରସ୍କୃତ ହେବ-ନାହିଁ । ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ମେଜର ପୋଏଟ୍‌ର ସ୍ଥାନ ଏହି ଦୃଷ୍ଟିରୁ ନିର୍ଦ୍ଧାରିତ ହେବା ଉଚିତ ମନେହୁଏ ।

# ଗୁରୁପ୍ରସାଦଙ୍କ 'କାଳପୁରୁଷ'

ବିନୋଦ ବିହାରୀ ପଣ୍ଡା

ଅନେକେ ଗୁରୁପ୍ରସାଦଂକର "କାଳପୁରୁଷ"କୁ ଏଲିଅଟ୍‌ଂକ "ୱେଷ୍ଟଲାଣ୍ଡ" କାବ୍ୟ ସହିତ ତୁଳନା କରନ୍ତି । ଏପ୍ରକାର ତୁଳନା ମଧ୍ୟ ଯଥାର୍ଥ, କାରଣ "ୱେଷ୍ଟଲାଣ୍ଡ"ର ଏପ୍ରିଲ୍ ବର୍ଷା, ଟାଇପିଷ୍ଟ ଗାର୍ଲ, ଫେ୍ଲବାସ୍‌ର ମୃତ୍ୟୁ ଭଳି ଅନେକ ଉପାଖ୍ୟାନର ଏକ ହୃପରଠାହୃରିଆ ବ୍ୟାଖ୍ୟାତ ଅନୁକରଣ ବଡ଼ ଆଖିଦୃଶିଆ ଜଣାଯାଏ । "ୱେଷ୍ଟ୍‌ଲାଣ୍ଡ" "ଏପ୍ରିଲ ବର୍ଷା"ରେ ଆରମ୍ଭ ହୋଇ "ଶାନ୍ତି"ରେ ଶେଷ ହେଲାଭଳି 'କାଳପୁରୁଷ' ମଧ୍ୟ ବର୍ଷା ଋତୁରେ ଆରମ୍ଭ ହୋଇ "ଅମୃତଂ ଗମୟ"ରେ ଶେଷ ହୋଇଛି । 'କାଳପୁରୁଷ'ର ତୃତୀୟ ସେକ୍‌ସନ୍ ସହିତ "ୱେଷ୍ଟ ଲାଣ୍ଡ"ର ଚତୁର୍ଥ ସେକ୍‌ସନ୍ ତୁଳନୀୟ । କିନ୍ତୁ କାବ୍ୟ ଦୁଇଟିର ପରିପ୍ରେକ୍ଷି, ଶୈଳୀ ଓ ପ୍ରଭାବରେ ବହୁତ ଫରକ ରହିଛି । "କାଳପୁରୁଷ"ର ଲେଖକ "ୱେଷ୍ଟଲାଣ୍ଡ"କୁ ଭଲଭାବେ ପଢ଼ିଛନ୍ତି ଓ "ୱେଷ୍ଟଲାଣ୍ଡ" ଦ୍ୱାରା ପ୍ରଭାବିତ ହୋଇ ଏକ କିତ୍ରୂଳୀ ଓଡ଼ିଆ କବିତା ଲେଖିଛନ୍ତି —ଏତିକି "କାଳପୁରୁଷ" କାବ୍ୟ ବିଷୟରେ ନିଧାର୍ଯ୍ୟଭାବେ କୁହାଯାଇପାରେ । ଏଣୁ କାରଣରୁ "କାଳପୁରୁଷ"କୁ ଅଧମ କାବ୍ୟ ଅଭିହିତ କରି ଉଡ଼ାଇ ଦେବା ଆଜି ଗୋଟାଏ କଥା ଓ ଏପରି ଅଭିହିତ କରିବା ଏକପ୍ରକାର ସ୍ୱୈମାଷିକ ଦେବାଳିଆ ପଣିଆ ଛଡ଼ା ଆଉ କିଛି ନୁହେଁ । ମନେରଖିବାକୁ ପଡ଼ିବ ଯେ "କାଳପୁରୁଷ" ଗୋଟିଏ ଓଡ଼ିଆ କାବ୍ୟ ଓ "ୱେଷ୍ଟଲାଣ୍ଡ"ର ପ୍ରାକ୍ ପଠନ ବିନା ଏହାକୁ ବୁଝିବାକୁ ଚେଷ୍ଟା କରିବା ସବୁଠାରୁ ଭଲ । ତେବେ, ଗୁରୁପ୍ରସାଦ "ୱେଷ୍ଟଲାଣ୍ଡ"ର ସାଧାରଣ ଢାଞ୍ଚା ଅନୁକରଣରେ ଏପରି କବିତା ଲେଖିବାର ଗୁରୁତ୍ୱ ଯେ କ'ଣ

ଆଉପାଟରେ, ତାହା ଭଲଭାବେ ହୃଦୟଂଗମ କରିବା ନିତାନ୍ତ ଆବଶ୍ୟକ—ଏପ୍ରକାର ଆଲୋଚନା ମଧ୍ୟ .ଓଡ଼ିଆ ସାଂପ୍ରତିକ କାବ୍ୟର ମୂଲ୍ୟାୟନ ପାଇଁ ଅପରିହାର୍ଯ୍ୟ ।

୧୯୨୨ରେ ପ୍ରକାଶିତ "ୱେଷ୍ଟଲାଣ୍ଡ" ଏଲିୟଟଙ୍କୁ ହଠାତ୍ ଏକ ଉଚ୍ଚାଙ୍ଗ କବିରେ ପରିଣତ କରିଦେଲା । ପ୍ରାୟ ସେହିବର୍ଷ ଜୟସ୍‌ଙ୍କ "ୟୁଲିସେସ୍", ପ୍ରୁଷ୍ଟଙ୍କ "ସୋଡୋମ୍ ଏଟ୍ ଗୋମୋରା" ୟେଟ୍‌ସଙ୍କ ମଧ୍ୟଭକ୍ତ କବିତାସମୂହ, ଲରେନସଙ୍କ "ଏରନ୍‌ସ ରଡ୍" ଓ ରିଲକେଙ୍କ "ସୋନେଟ୍ସ ଆନ୍ ଅର୍ଫିୟୁସ୍" ବାହାରିଥିଲା—ଏ ସବୁ ଦେଖିଲେ ଗୋଟିଏ ଯୋଡିଏ ଉଚ୍ଚାଙ୍ଗ କୃତି ସହିତରେ ୟୁରୋପର ନୂତନ ଚିନ୍ତା ଓ ବୋଧଶୀଳତା ରୂପାୟିତ ହୋଇଛି । 'ୱେଷ୍ଟଲାଣ୍ଡ' କବିତାର ଏପ୍ରକାର ସାହିତ୍ୟିକ ସମାଜ ଗୁରୁପ୍ରସାଦଙ୍କ ଭଳି ଜଣେ ଆଧୁନିକ କବିଙ୍କୁ ଆକର୍ଷିତ କରିଥିବା ସମ୍ଭବ । "ୱେଷ୍ଟଲାଣ୍ଡ" ନୃତତ୍ତ୍ୱ ଜଗତରୁ ପରିପୋଷକ ରୂପକମାନଙ୍କୁ ଆହରଣ କରି ଏକ ନୂତନ ବିଷୟବସ୍ତୁର ରାଜ୍ୟ ଭିତରକୁ ପଶିଲା । ଅନ୍ୱେଷଣ ବା ଯାତ୍ରା ହେଉଛି ଏକ ସମୟଜୟୀ ଓ କାଳଜୟୀ ମୌଳିକ ବିଷୟବସ୍ତୁ । ଏହାର ବହୁଳଜ୍ୟୋତିଷତା ଯେକୌଣସି ଆଧୁନିକ କବିର ଆଗ୍ରହ ଉତ୍ପାଦନ କରିବା ସ୍ୱାଭାବିକ । ଏହି ଅନ୍ୱେଷଣ-ପ୍ରଣାଳୀ ଆଧୁନିକ ମନୁଷ୍ୟର ପରିସ୍ଥିତିକୁ ନିବିଡ଼ଭାବେ ଉପସ୍ଥାପନ କରିବାରେ କ୍ଷମ । ବାଇବେଲ୍-ପରସ୍ତ ୟୁରୋପୀୟ ମନକୁ ନୂତନ ଯାହା, ଭାରତୀୟ ବିଶେଷ କରି ଓଡ଼ିଆ ମନକୁ ଅବଗତ ତାହା । ତେଣୁକରି, "କାଳପୁରୁଷ"ରେ ଉଦ୍ଧବ-କୃଷ୍ଣଙ୍କର ଅବତାରଣା । "ୱେଷ୍ଟଲାଣ୍ଡ" କବିତାର ଔଷଧୀୟ ଗୁଣ ମଧ୍ୟ ଗୁରୁପ୍ରସାଦଙ୍କର ଆଗ୍ରହ ଉତ୍ପାଦନ କରିଥିବା ସମ୍ଭବ । ଅନ୍ୟ ସମସ୍ତ ଚିନ୍ତକ ମାନଙ୍କର ବୋଧଶୀଳତା ଜରିଆରେ ଟାଇରସିଆସ୍

ଯେପରିଭାବରେ ଯୁଗପତ୍ ପ୍ରଭାବ ଅନୁଭବ କରେ, ତାହା ହେଲା ଏଲିୟଟୀୟ କାବ୍ୟର ଏକ ବିଶେଷଲକ୍ଷଣ । ଗୁରୁପ୍ରସାଦ ଏହି ଏଲିୟଟୀୟ ଗୁଣ ଉପ୍ଲାବନରେ ଏଲିୟଟ୍‌ଙ୍କ ଭଳି ସେତେ ମାହାଟେଧ ଧର୍ଷୀ ହୋଇପାରି ନାହାନ୍ତି । ଏଲିୟଟ୍‌ଙ୍କ ଟାଇରେସିଆସ ଗୁରୁପ୍ରସାଦଙ୍କ କବିତାର ବୋଧକ (Perceiver)ଠାରୁ ଅଧିକତର ବହୁଜ୍ଞ । "କାଳପୁରୁଷ" କବିତାର ବୋଧକ କୌଣସି ରୋମାଣ୍ଟିକ କବିର ଭାବକର ଅଧିକତର ନିକଟବର୍ତ୍ତୀ ମନେହୁଏ । "ଓ୍ୱେଷ୍ଟଲ୍ୟାଣ୍ଡ" କାବ୍ୟର ସହସାଗ୍ରତ, ଖଣ୍ଡିତତା, ଓ ବିବିଧାସ୍ପୃତ ଅଭିବ୍ୟକ୍ତି ଯାହା କବିତାଟିକୁ ସିନେମାଟିକ ପ୍ରଭାବ ପ୍ରଦାନ କରିପାରେ, "କାଳପୁରୁଷ" କବିତାରେ ସେସବୁ ଏକପ୍ରକାର ଲିରିକାଲ ଉଚ୍ଛ୍ୱାସରେ ମିଶାଇ ହୋଇଯାଇଥିବା ଭଳି ଦୁର୍ନିବାର ଭାବେ ଅନୁଭୂତ ହୁଏ । ଏହା ହେଲା, "ଓ୍ୱେଷ୍ଟଲ୍ୟାଣ୍ଡ" କାବ୍ୟର ଅବଲମ୍ବନରେ ଲିଖିତ ହୋଇଥିବାଭଳି ଭାବ "କାଳପୁରୁଷ"ର ସମୀକ୍ଷା କରିବା, କିନ୍ତୁ "ଓ୍ୱେଷ୍ଟଲ୍ୟାଣ୍ଡ" କାବ୍ୟ କଥା ମନରେ ନ ଧରି ମଧ୍ୟ "କାଳପୁରୁଷ"ର ସମୀକ୍ଷା କରାଯାଇପାରିବ ଓ ବର୍ତ୍ତମାନ ସେପରି ସମୀକ୍ଷାର ସମୟ ମଧ୍ୟ ଆସିଲେଣି । "କାଳପୁରୁଷ"ର ବୋଧକ (Perceiver) ହେଲା ପ୍ରଧାନତଃ ଜଣେ ଭାବକ, ଯେ କି ତା'ର ଦେଢ଼ବର୍ଷ ତଳର ତିକ୍ତ ପ୍ରେମସ୍ମୃତି ଦ୍ୱାରା ବିବ୍ରତ ହୋଇ ବର୍ଷାର ଗୋଟିଏ ମନୋବସ୍ଥା-ପ୍ରଧାନ ରାତି ଆଙ୍କି ଆଙ୍କି ଜନ୍ମର ସ୍ମରଣ ଓ ଜନ୍ମର ଜୀବନର ମରଣୋତ୍ତର ମୂଲ୍ୟାୟନରୁ କିଛି ଆଶ୍ୱାସନା ପାଇବାକୁ ଚେଷ୍ଟା କରି ଶେଷରେ ରହସ୍ୟ ଓ ପ୍ରଦର୍ଶନମୟ ଧର୍ମ ତତ୍ତ୍ୱର ଆଶ୍ରୟ ଗ୍ରହଣ କରିଛି । "ବୋଧିଦ୍ରୁମ ତଳେ ଅବା ଫାଶିଦଉଆ ବରଗଛ ତଳେ/ଲୋକ ଶୋଷ କମିନାହିଁ........" (ଲାଇନ୍ ୨୯—୩୦)ରେ ବୁଦ୍ଧଦେବ ଓ ଫାଶୀ ଆସାମୀକୁ ଯୋଡ଼ିବାର ମତଲବ ହେଲା, କାମନାର ବିନାଶରେ ଦୁଃଖର ବିନାଶ—

ନିଜକୁ ଜାଣି ମୁଁଛା ଆମେ କାମନାର ପରିତୃପ୍ତି ପାଇଁ ସତତ ଚେଷ୍ଟିତ ରହୁଁ ଓ ଏହା ହେଲା ଆମର ଦୁର୍ଗତି । ବର୍ଷା ଆମକୁ ଏହା ସୂଚନା ଦିଏ । କୌଣସି ଏକ ଗୀତକାବ୍ୟରେ ମଧ୍ୟ ଅଛି, "ଘନ ଭସରେ ଘନ ଭସରେ ଗୃହକ ପ୍ରାପ୍ତ ହେଲି" । କିନ୍ତୁ "କାଳପୁରୁଷର"ର ବର୍ଷାଟା ଦୁରନ୍ତପଣରୁ ଘର୍ଘ ହୋଇଗଲା ଭଳି ମନେହୁଏ । ଏହା "ଘୁଡ଼ିକୁ ଘୁଡ଼ିକୁ ଡେଇ" "ଗଳି ଗଳି ମେନସୋଡ଼ ସବୁ" (ଲାଇନ୍ ୨୫୫) ପାର ହୋଇ କେବଳ ପାର ହୋଇ ଯାଉ ନାହିଁ, ବରଂ ତା ସାଥେ କବିତା ଟିର ନିତା ପ୍ରଶ୍ନକାଶ୍ୟ ସବୁକୁ ଧୋଇକରି ଉଦ୍ଧାରଣର ଉଚ୍ଛନ୍ନ ପ୍ଲାବନ ବୁହାଇ ଦିଏ ଯେପରି ଅଷ୍ଟାଙ୍କର ମକରକେତନକୁ ଲଜ୍ଜିତ କରି ବନ୍ଧିଦେଉଛି । ବର୍ଷାର ଉଦ୍ଧାରଣର ପ୍ଲାବନ ସହିତ ଭାଷାର ରୋମାଂଟିକ୍ ଭାବ-ପ୍ରବଣତା ଖୁବ୍ ଭଲ ଖାପ ଖାଉଛି । "ହେ ଅନ୍ଧାର, ହେ ଉଦ୍ଧବ" ବୋଲି ସେ ବାରମ୍ବାର ଡାକୁଥିଛନ୍ତି, କିନ୍ତୁ କୌଣସି ଅନ୍ଧାର ବା ଉଦ୍ଧବ କବିଙ୍କୁ ତାର ରୋମାଂଟିକ୍ ଭାବପ୍ରବଣତାରୁ ରକ୍ଷା କରିପାରୁ ନାହିଁ । ୨୬ତମ ଲାଇନ୍‌ରେ ଉଭୟଲିଙ୍ଗୀ ଇକାର ଉଲ୍ଲେଖ କବିର ଭାଇକାଉସ୍‌ ଅସହାୟତାକୁ ଅତି ସ୍ପଷ୍ଟ କରିଦେଉଛି । ଏହି ଉଭୟଲିଙ୍ଗୀ ଇକା ଏଲିୟଟଙ୍କ ଉଭୟଲିଙ୍ଗୀ ଟାଇରେସିଆସ୍ ହୋଇ ପାରୁ ନାହିଁ, ଠିକ୍ ଯେପରି ବୃକ୍ଷପୃ ସେଜ୍‌ସନ୍‌ର "ମୁଲ୍‌ଏମ ଚିକ୍‌କଣ ଓ ଗୋଲ୍‌ଗାଲ ଲମ୍ବା ଓ ଚଉଡ଼ା" ଉମ୍ବ ଏଲିୟଟଙ୍କ ଫ୍ଲେବାସ୍ ହୋଇପାରୁ ନାହିଁ । ଅତଏବ କବିତା ଶେଷରେ "ମୃତ୍ୟୋର୍ମାଂ ଅମୃତଂ ଗମୟ"ର ଅବତାରଣା (ଅନ୍ତତଃ ଏହି ଧର୍ମବାକ୍ୟ କାଳେ କବିତାଟିକୁ ଗାମ୍ଭୀର୍ଯ୍ୟ ଭୂଷିତ କରିଦେଇପାରେ !) —ତାହା ପୁଣି "ଓ୍ୱେଷ୍ଟଲାଣ୍ଡ" କାବ୍ୟର "ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ"ର ଏକ ନିକୃଷ୍ଟତର ସମସ୍ତର । ଏହିପରି, "ଓ୍ୱେଷ୍ଟଲାଣ୍ଡ"ଠାରୁ ସ୍ୱତନ୍ତ୍ର ହୋଇ "କାଳପୁରୁଷ"ର ସ୍ୱତନ୍ତ୍ର ସମୀକ୍ଷା କରିବାରେ ଆମେ

ଯେତେ ଚେଷ୍ଟିତ ହେଲେ ମଧ୍ୟ "ଓ୍ୱେଷ୍ଟଲଣ୍ଡ"ର ପ୍ରକରଣ ଦରକାର ପଡ଼ୁଯାଉଛି । ନିଜ କବିତାର ଅଭିବ୍ୟକ୍ତିକୁ ଘେଣ୍ଡାଇବାପାଇଁ "ଓ୍ୱେଷ୍ଟଲଣ୍ଡ"ର ଢାଞ୍ଚାକୁ ଆମଦାନି କରିବାର ପ୍ରୟାସ । ନି... ସୂତ୍ରବଦ୍ଧ (Thre dbare) ଜଣାଯାଉଛି ।



# ଗୁରୁପ୍ରସାଦଙ୍କ ଜୀବନ-ଜିଜ୍ଞାସା

## କୁମୁଦଚନ୍ଦ୍ର ଦାଶ

'କାଳପୁରୁଷ' ଗୁରୁପ୍ରସାଦ ମହାନ୍ତିଙ୍କର ସର୍ବଶ୍ରେଷ୍ଠ କବିତା । ଇଲିୟଟଙ୍କ 'The Waste Land' କବିତାର ଆମୂଳାନ୍ତ ପ୍ରେରଣା ସ୍ୱୀକାର କରିଥିବା ସତ୍ତ୍ୱେ ଓଡ଼ିଆ କବିତାର ଇତିହାସରେ ଏହା ଥିଲା ଏକ ଅପୂର୍ବ ସଂଯୋଜନା । ରାଧାନାଥଙ୍କ 'ଚିଲିକା' କିମ୍ବା 'ମହାଯାତ୍ରା' ପରି ନ ହେଲେ ବି ଜଗନ୍ନାଥ ଦାସଙ୍କ 'ଭାଗବତ' କିମ୍ବା ଗଙ୍ଗାଧର ମେହେରଙ୍କ 'ପ୍ରଣୟବଲ୍ଲରୀ' ପରି 'କାଳପୁରୁଷ'କୁ ସମ୍ମାନ ଦେବାରେ କୌଣସି କୁଣ୍ଠା ରହିବା ଉଚିତ ନୁହେଁ । 'The Waste Land' ପରି ବିଂଶ ଶତାବ୍ଦୀର ଅବକ୍ଷୟଗ୍ରସ୍ତ ଆଧୁନିକ ଜୀବନର ଏକ କାବ୍ୟିକ ଉପଲବ୍ଧି ଓ ଉପସ୍ଥାପନାର ପ୍ରଚେଷ୍ଟା ହିଁ 'କାଳପୁରୁଷ'ର ବୈଶିଷ୍ଟ୍ୟ । ଇଲିୟଟଙ୍କ ପରି ଗୁରୁପ୍ରସାଦ ମଧ୍ୟ କବିତାଟିର ଅନ୍ତିମତମ ସ୍ତବକରେ ମୃତ୍ୟୁନସ୍ତ ଅମୃତର ଆକାଙ୍କ୍ଷା ବା ଅଭୀପ୍ସା ପୋଷଣ କରିଛନ୍ତି ।

ଏ ଗ୍ରହର ନଷ୍ଟ ଯାତ୍ରା ଆଜି ଯଦି ଅନ୍ଧାରରୁ
ଏ ଗ୍ରହର ନଷ୍ଟ ଯାତ୍ରା ଆଜି ଯଦି ମରଣରୁ
ଏ ଗ୍ରହର ନଷ୍ଟ ଯାତ୍ରା ଆଜି ଯଦି ଅସତରୁ

ମୃତ୍ୟୁ ର୍ମାଂ
ଅସତୋ ମାଂ
ତମସେ ମାଂ
ମୃତ୍ୟୁ ର୍ମାଂ ··· ମୃତ୍ୟୁ ର୍ମାଂ ··· ମୃତ୍ୟୁ ର୍ମାଂ ···
ଅମୃତଂ ଗମୟ । ( ସମୁଦ୍ରସ୍ନାନ, ଲର୍କ୍ କୁର୍କ୍ସ, ପୃ.୫୦ )

'କାଳପୁରୁଷର'ର ଅନ୍ତିମଚ୍ଛନ୍ଦ ସ୍ତବକରେ ରହିଥିବା ଏହି ମୃତ୍ୟୁ ଓ ଅମୃତ ଅଭୀପ୍ସା କବିଙ୍କର ପରବର୍ତ୍ତୀ କବିତା 'ଅର୍ଜୁନ ଉଦ୍ଧବ'ର ମୁଖ୍ୟ ଭାବସତ୍ତା ( ଥିମ୍ ) କହିଲେ ଭୁଲ ହେବ ନାହିଁ । ବସ୍ତୁତଃ 'ଅର୍ଜୁନ ଉଦ୍ଧବ'ର ସୃଷ୍ଟି ପ୍ରେରଣାଗତ-କାରଣ, ଏହି ''କାଳପୁରୁଷ'' କବିତାରେ ହିଁ ଅନୁସନ୍ଧେୟ । 'କାଳପୁରୁଷ'ର ଅନେକ ପଙ୍କ୍ତି ପରେ, ଅନିୟମିତ ବ୍ୟବଧାନରେ ଅର୍ଜୁନ ଓ ଉଦ୍ଧବଙ୍କର ଉଲ୍ଲେଖ ବାରମ୍ବାର ମିଳିଥାଏ । ଯଥା —

ହେ ଅର୍ଜୁନ ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର
ରୁହ ରୁହ କ୍ଷଣେ ରୁହ ପିଠିରେ ମୋ ତୁମ ପର ବୋଝ
ଅନ୍ଧାରରେ ପାଦ ଯେବେ ଛନ୍ଦିହୁଏ ଗୁହ୍ମକଙ୍କ ନଟା
ଶୁଖେ ଗୁଡ଼ ଭଙ୍ଗେ ହାଡ଼ ବଢ଼ିଉଠେ ଶୋଷ । (ସମୁଦ୍ରସ୍ନାନ ପୃ.୩୯)

ବା

ହେ ଅର୍ଜୁନ ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର
ରୁହ ରୁହ କ୍ଷଣେ ରୁହ ପିଠିରେ ମୋ ତୁମପର ବୋଝ
ମୁଁ ଯିବି ତୁମରି ଘର ତାହା ଖୋଜି କେଉଁଠି ଅଛି
ଖୋଜି ଖୋଜି ଝରଣାର ସୁଅ
ମୁଁ ଯିବି ତୁମରି ପଥ ଖୋଜି ମୋର ପିତାମାତା
ନିର୍ମଳ ନକ୍ଷତ୍ରରେ ଖୋଜି ଅନୁଭବର ତାରାର ଆଲୁଅ
( ସମୁଦ୍ରସ୍ନାନ-ପୃ.୪୫ )

ଏତିକି ନୁହେଁ, ଏହା ବର୍ଣ୍ଣିତ 'କାଳପୁରୁଷ'ର ୨୨୧-୨୨୪, ୩୪୪-୩୪୭ ପ୍ରଭୃତି ପଙ୍‌କ୍ତିମାନଙ୍କରେ ମଧ୍ୟ ଏପରି ଉଲ୍ଲେଖ ମିଳିଥାଏ । ନଷ୍ଟନୀଡ଼ ଭିତରେ ମୁକ୍ତି ସ୍ୱପ୍ନ ବା ଅମୃତର ଆକାଙ୍‌କ୍ଷାର ଏକ ଏକ ପୌରାଣିକ ପ୍ରତୀକ ହୋଇ ଦେଖା-ଦେଇଛନ୍ତି ଅକ୍ରୂର ଓ ଉଦ୍ଧବ । ଅକ୍ରୂର ଏବଂ ଉଦ୍ଧବ ଶ୍ରୀମଦ୍ଭାଗବତର ଦୁଇଟି ଚରିତ୍ର ଏବଂ ଭକ୍ତଙ୍କ ଜୀବନର ଆଦର୍ଶ । ସେଥି ମଧ୍ୟରୁ ଅକ୍ରୂର ଚରିତ୍ରର ପ୍ରତୀକ-ଧାରଣାର ବସ୍ତୁତରେ 'ଅକ୍ରୂର ଉବାଚ' କବିତାର ଜନ୍ମ ବୋଲି କୁହାଯାଇପାରେ । ଏବଂ ଏହି କବିତାରେ ଦେହାତୀତ ମୁକ୍ତିର ବାସନା ସ୍ପଷ୍ଟତର ଓ ବସ୍ତୁତର ଅଭିବ୍ୟକ୍ତି ଲାଭ କରିଛି । ମଥୁରାରୁ ଗୋପ – ଏକ ଯାତ୍ରାର ରୂପକ ଭିତରେ କବିତାଟିର ପରିକଳ୍ପନା । ଅକ୍ରୂର ଯାଉଛନ୍ତି ଶ୍ରୀକୃଷ୍ଣଙ୍କ ପାଖକୁ । ଜୀବାତ୍ମାର ପରମାତ୍ମାଙ୍କ ଉଦ୍ଦେଶ୍ୟରେ ଅଭିଯାତ୍ରା । କୃଷ୍ଣ-ଦର୍ଶନ ପୂର୍ବରୁ ଅକ୍ରୂର-ମାନସର ଆଧ୍ୟାତ୍ମିକ ବ୍ୟାକୁଳତାର ଚିତ୍ର ଅଙ୍କନ କରିଛନ୍ତି କବି । ତାହା ଆଧୁନିକ ମଣିଷର, ହୋଇପାରେ ମଧ୍ୟ ସ୍ୱୟଂ କବିଙ୍କର । ଅକ୍ରୂରର ପ୍ରାର୍ଥନା କବିଙ୍କର ଭାଷାରେ –

> "ମହାପ୍ରଭୁ ମୁକ୍ତି ଦିଅ ଏହି ଯାତ୍ରା ଶୁଦ୍ଧ ହେଉ ତୁମର ଦୟାରୁ
> ଏହି ଯାତ୍ରା ହେଉ ମୋର ଶେଷ ଯାତ୍ରା ଏ ଦେହରୁ
> ତୁମର ସଂହାର ଡେଇଁ
> ବହୁତ ବହୁତ କ୍ଳାନ୍ତ ମୁନରୁକ୍ତି ଏ ଆତ୍ମାର
> ଆଜି ତୁମ ଦୟା କ୍ଷମା କରୁଣାର ସମୁଦ୍ର କୂଳରୁ"
>
> ( ସମୁଦ୍ରସ୍ନାନ-ପୃ୫୪ )

ମନେ ହେବ ଏହି ଆଧ୍ୟାତ୍ମ୍ୟ ଚେତନା ହିଁ ଗୁରୁପ୍ରସାଦଙ୍କ ଜୀବନ ଜିଜ୍ଞାସାର ପ୍ରକୃତ ଦିଗ । କିନ୍ତୁ ତାଙ୍କର 'ସମୁଦ୍ରସ୍ନାନ' କବିତା

ସଙ୍କଳନରେ ମାତ୍ର ଏହି ଦୁଇଟି କବିତାରେ ହିଁ ତାଙ୍କ ଜୀବନ-ଜିଜ୍ଞାସାର ଏକ୍ଷ ଦିଗ, ଭାବ ବା ଚେତନା ଅଶେଷ ପ୍ରତିନିଧିତ୍ୱ ଲାଭ କରିଛି । ପରିସଂଖ୍ୟାନାତ୍ମକ ଦୃଷ୍ଟିକୋଣରୁ ଗୌଣ ପ୍ରତିପାଦିତ ହେଉଥିବା ଏହି ଚେତନା ତାଙ୍କ କବିତାର ସାମଗ୍ରିକ ଜୀବନ-ଜିଜ୍ଞାସା ସମ୍ପର୍କରେ ଅପରିଚିତ୍ୟ ବୋଲି ମନେ ହୁଏନାହିଁ । ସ୍ୱର୍ଗ ଆଡ଼କୁ ତାଙ୍କର ଆଖିର ଚଳଣିତା ଖୁବ୍ କମ୍ । ସେ ଆକାଶର କବି ନୁହନ୍ତି, କି ଜଳ କାବ୍ୟ ସଙ୍କଳନକୁ 'ସମୁଦ୍ରସ୍ନାନ' ବୋଲି ନାଁ ଦେଇଥିଲେ ମଧ୍ୟ ସେ ସମୁଦ୍ର ସୀତାକାନ୍ତଙ୍କ 'ସମୁଦ୍ର' ନୁହେଁ, ଏବଂ ଗୁରୁପ୍ରସାଦ ସମୁଦ୍ରର କବି ମଧ୍ୟ ନୁହନ୍ତି । ସେ ମୁଖ୍ୟତଃ ପୃଥିବୀର କବି ।

ଜନ୍ମ ଓ ମୃତ୍ୟୁର ସୀମା ମଧ୍ୟରେ ଆବଦ୍ଧ ଏହି ପୃଥିବୀର ଜୀବନକୁ କେନ୍ଦ୍ର କରି ଗଢି ଉଠିଛି ଗୁରୁପ୍ରସାଦଙ୍କ ଜୀବନ-ଜିଜ୍ଞାସା । ଏହି ପୃଥିବୀ ବାଦିତାର ଦୁଇଟି କାରଣ ତାଙ୍କ କବିତା ଭିତରୁ ସନ୍ଧାନ କରାଯାଇପାରେ । ସେ ମୁକ୍ତିର ସ୍ୱପ୍ନ ଦୃଢ଼ ଭାବରେ ଦେଖି ପାରିନାହାନ୍ତି; କାରଣ ଏହି ପୃଥିବୀ ପ୍ରତି ତାଙ୍କର ଆସକ୍ତି, କାମନା ଓ ତୃଷ୍ଣା ତଥାପି ଶେଷ ହୋଇନାହିଁ । 'କାଳପୁରୁଷ'ରେ ରହିଛି ଏହାର ସୁସ୍ପଷ୍ଟ ଉଚ୍ଚାରଣ ।

ଲୋକ ଶୋଷ କମି ନାହିଁ ସରିନାହିଁ ଲୋପ ପାଇ ନାହିଁ
ଲୋଭ ମରି ଯାଇନାହିଁ ନିଗୁଡିଆ କଟକ ତଳରେ
ଆଜି ତେଣୁ ଗତିହୀନ ଗ୍ରେଟ୍ ଏକ ବର୍ତ୍ତମାନ ଧରି
ଗଳି ପରେ ଗଳି ଡେଇଁ କୁଢ କୁଢ଼ ବାଲି ଡେଇଁ ଡେଇଁ
ମୁଁ ଆଜି ଯୁଝୁଛି ଖୋଜି ତାର ଆଜି କାଲି ଗତି
ଚୁପ୍ ଚୁପ୍ ପବନର କଥା

ଦୂର ଦୂର ଅଙ୍ଗାର ଓ ଅନ୍ଧାରର ସୁଡ଼ଙ୍ଗ ସେପାଖେ
ଆଇନ୍‌ଷ୍ଟୀନ୍ ଲେମନେଡ଼ ଝରଣାର ନିର୍ଭୁଲ ସମତା ।
( ସମୁଦ୍ରସ୍ନାନ ପୃ୩୯ )

ପୃଥିବୀ-ବାସ୍ତବତାର ବିକ୍ଷିପ୍ତ କାରଣ ହେଉଛି ସ୍ୱର୍ଗଆଡ଼୍ୟ ବିଫଳତା । ମନେ ହୁଏ ସତେ ଯେପରି ଗୁରୁପ୍ରସାଦ ଶଙ୍କରାଚାର୍ଯ୍ୟଙ୍କ 'ମୋହ ମୁଦ୍‌ଗର'ର "ପୁନରପି ଜନନମ୍ ପୁନରପି ମରଣମ୍ ପୁନରପି ଜନନୀ ଜଠରେ ଶୟନମ୍"ର ନିରଙ୍କୁଶ ଦୁଃସହତାରେ ବିଶ୍ୱାସୀ । ତାଙ୍କର ଆଠନମ୍ବର ସନେଟ୍‌ର ଶେଷ ପଙ୍‌କ୍ତିଦ୍ୱୟର ଉଚ୍ଚାରଣ ହେଉଛି —

"ଖଣ୍ଡିତ ଆକାଶ ଭୂମି ମରଣ ବା ଜୀବନର ମୁକ୍ତି
ମୁଁ କରୁଛି ଅନ୍ୱେଷଣ ପାଇନାହିଁ ସନ୍ଧାନ କାହାର" ।
( ସମୁଦ୍ରସ୍ନାନ ପୃ୫୭ )

ଜୀବନରୁ ମୁକ୍ତି ନାହିଁ, ନାହିଁ ମଧ୍ୟ ମରଣରୁ ମୁକ୍ତି । ତେଣୁ ବନ୍ଧନ ଏବଂ ତେଣୁ ଯନ୍ତ୍ରଣା । ଏବଂ ତାହାହିଁ ବୋଧହୁଏ ଜୀବନ-ସ୍ଥିତିର ଯଥାର୍ଥ ପରିଚୟ । ଗୁରୁପ୍ରସାଦଙ୍କ କବିତାରେ 'ଟରନ୍ତାନ ଅନସ୍ତିତ୍ୱ'ର ଏକ ଧାରଣା ଅଛି ବୋଧହୁଏ । ସାମ୍ପ୍ରତିକ ଓଡ଼ିଆ କବିତା କ୍ଷେତ୍ରରେ ଗୁରୁପ୍ରସାଦ ଓ ରମାକାନ୍ତ ଉଭୟଙ୍କଠାରେ ଏହି 'ଟରନ୍ତାନ ଅନସ୍ତିତ୍ୱ'ର ପ୍ରଶ୍ନ ଦେଖା ଦେଇଛି । ଉଭୟ କ୍ଷେତ୍ରରେ ବିଫଳତା ହିଁ ପୁରସ୍କାର ହେବାର କଥା ହୋଇଛି । ଭିନ୍ନ ଭିନ୍ନ ସ୍ୱର ଶୈଳୀରେ ସେହି ଦୁଃଖାନୁଭୂତିକୁ କବିତ୍ୱ ଉପସ୍ଥାପିତ କରିଛନ୍ତି । ଅବଶ୍ୟ ଗୁରୁପ୍ରସାଦଙ୍କ କ୍ଷେତ୍ରରେ ଏହା କଣ୍ଠଠା ଉପରଠାଉରିଆ, କିନ୍ତୁ ରମାକାନ୍ତଙ୍କ କ୍ଷେତ୍ରରେ ରକ୍ତକୁ ପାଣି କରିଦେବା ଭଳି ଶକ୍ତ ଓ କରୁଣ । ଯାହାହେଉ, ଏହି ମଧ୍ୟଶ୍ରେଣୀର କୁହାଯାଇ ପାରେ ଯେ 'ଟରନ୍ତାନ ଅନସ୍ତିତ୍ୱ'ର ଅସମ୍ଭାବନା ଏବଂ ରକ୍ତମାଂସର ମାୟାବିନିବନ୍ଧ ମଣିଷର ସହଜ-

ଦୃଷ୍ଟା ଗୁରୁପ୍ରସାଦଙ୍କ ପୃଥିବୀର ଏହି ଜୀବନ ବା ଜୀବନର ଏହି ପୃଥିବୀ ପ୍ରତି ଆସକ୍ତ କରାଇଛି । ଜୀବନର ସାର୍ଥକତା ପ୍ରତି ସଂଶୟ ସତ୍ତ୍ୱେ କେଜାଣି କାହିଁକି ଜୀବନରେ ଅର୍ଥ ଖୋଜିବାର ଚେଷ୍ଟା ଅପ୍ରତିହତ ଓ ଅକ୍ଳାନ୍ତ । କିନ୍ତୁ ଏବେ ତାହା ମିଳିବାର ନୁହେଁ, ତାଙ୍କୁ ମିଳୁନାହିଁ । ଗୁରୁପ୍ରସାଦଙ୍କ ଆଖିର କପୋତ ଏହି ପୃଥିବୀ ଉପରେ ଉଡ଼ିବୁଲୁଛି :

ଆଖିର କପୋତ ମୋର ଆକାଶର ଇସ୍ପାତ ଦେହରେ
ବାଧା ପାଇ ପ୍ରତିଦିନ ଫେରିଆସେ ଏହି ପୃଥିବୀକୁ
ସେଇଠାରେ ତୁମେ କର ପ୍ରତିଦିନ ବିଜନ ପ୍ରତୀକ୍ଷା
ଜନ୍ମମୃତ୍ୟୁ ବ୍ୟାଧି ପୁଣି ଜୀବନର ଅର୍ଥ ବୁଝିବାକୁ ।
( 'ସମୁଦ୍ରସ୍ନାନ' ପୃ ୨୩ )

'ସମୁଦ୍ରସ୍ନାନ'ର ବିଭିନ୍ନ ସ୍ଥଳରେ ଏହି ପୃଥିବୀର ଉଲ୍ଲେଖ ମିଳିଥାଏ । ତନ୍ମଧ୍ୟରୁ କେତୋଟି ଏଠାରେ ଉଦ୍ଧାର କରାଯାଇପାରେ ।

( କ ) ପୃଥିବୀ ସ୍ମୃତିରେ ଲୋଟି ପୋଡିଯାଏ ଜଳିଯାଏ ସବୁ
ମାଂସ ଫୁଟେ ଫୁଲ ହୋଇ ମନ ପଡ଼େ ପ୍ରେମାଗ୍ନିରେ ଶୋଇ ।
( 'ଚମ୍ପାଫୁଲ' ପୃ ୧ )

( ଖ ) ଏ ବର୍ଷର ନଷ୍ଟ ଆତ୍ମା ଏ କାଳର ଅପରୂପରେ
ଭୁଲିଯାଏ ବାଟ ଅବା ଭୁଲିଯାଏ ପୃଥିବୀର ସ୍ମୃତି ।
( 'ନନ୍ଦତଗୋଧୂଳି' ପୃ ୨୫ )

( ଗ ) ଆମର ଏ ପୃଥିବୀରେ କେବେ କିଛି ଲୋଡ଼ାହୁଏ ନାହିଁ
ନଶାମାଛି, ପୋକଯୋକ ଲୋକବାକ କାଉ ଓ ବାଦୁଡ଼ି
ଆଶ୍ଚର୍ଯ୍ୟ ପୃଥିବୀ ହୁଏ ହଠବାକ୍ ଅଭିଭୂତ ସୂର୍ଯ୍ୟାସ୍ତ ଉପରେ
ପ୍ରତିଦିନ ଏ ପୃଥିବୀ ଆକାଶର ଅପରୂପ ଡେଇଁ
ଅଜ୍ଞାତ ବା ଅବଜ୍ଞାତ କେଉଁ ଦୂର ଅନ୍ଧାରକୁ ଧାଏଁ ।
( ହରେକୃଷ୍ଣ ଦାସ-୧ ପୃ ୨୮ )

( ଘ ) ସବୁଜ କବିତା ପରି ହୁଏତ ବା ଏ ପୃଥିବୀ
ରୋମାଣ୍ଟିକ ସ୍ୱପ୍ନାଭ ସୁନ୍ଦର
ଏ ପୃଥିବୀ ଜଣାଯାଏ ବନ୍ଧୁହୀନ କ୍ଳାନ୍ତିହୀନ
କେଉଁ ଏକ ଅନ୍ୟ ଦେଶପରି ।
( ହରେକୃଷ୍ଣ ଦାସ-୨ )

( ଙ ) ଏହି ଭଲ ପାଇବାର ଦେହ ଧରି ଏ ପୃଥିବୀ ହୁଏତ ବା
ଏତେ ରୂପବତୀ
ହୁଏତ ଏ ପୃଥିବୀକୁ ଭଲପାଏ ଦେହ ମୋର ସ୍ମୃତିର
ଏ ବେଦନା ଭିତରେ
ଡାଥାପି ମୋ ବୃକ୍ଷପାଖେ ସମୟର ହାହାକାର ମୃତ୍ୟୁର ଏ
ଚରମ ଶୂନ୍ୟତା
ଶୂନ୍ୟ ଏହି ବେଦନାର ବିଷର୍ଣ୍ଣ ଏ ଗୋଧୂଳିରେ ଏ ପୃଥିବୀ
ଏ ମ୍ଳାନ ଆକାଶ । ( ସିଲ୍ଭିଆ )

( ଚ ) ଆକସ୍ମିକ ଦେହ ମୋର ପୃଥିବୀର ଘଟଣାଜନିତ
ଆକସ୍ମିକ ଘଟଣାରୁ ଉପଜାତ ତୁମର ଏ ଦେହ
ଅସରନ୍ତି ଏ ବାଟରେ ତୁମେ ଓ ମୁଁ ସମୟର ହାତ
ମୋର ଭଲ ପାଇବାର ଯୁକ୍ତି ଆଜି ତୁମର ସନ୍ଦେହ ।
( ସନେଟ୍-୨ )

ଏହି ପୃଥିବୀରେ ରୂପବତୀ ନାରୀର ଦେହ ଭିତରେ ଗୁରୁପ୍ରସାଦଙ୍କ ଅର୍ଥଖୋଜାର ଉଦ୍‌ଭ୍ରାନ୍ତ ସାଧନା । 'ସମୁଦ୍ରସ୍ନାନ'ର ପ୍ରଥମ କବିତା 'ଚମ୍ପାଫୁଲ'ରେ ଜୀବନ ଓ ଯୌବନ ଉପରେ ରୂପବତୀ ତରୁଣୀର ଦୁର୍ନିବାର ପ୍ରଭାବକୁ କବି ଉପସ୍ଥାପିତ କରିଛନ୍ତି । ଭାବାବେଗ ମୁଚ୍ଛିର ଏବଂ ଇନ୍ଦ୍ରିୟସଂବେଦୀ ।

ଚମ୍ପ ଫୁଲ ମହକରେ କେତେ ସେ ଯେ ଦାରୁଣ କୁହୁକ
ରକ୍ତେ ଯାଏ ନିଆଁ ଲଗି ଯୁକ୍ତି ଆଉ ନିଃଶ୍ୱାସରେ ନିଆଁ
ଯୁକ୍ତି ଆଉ ନିଶ୍ୱାସରେ ନିଆଁ ସେ ଯେ ଦେହରେ ଦେହ
ବଜ୍ରର ଚମକ
ବଜ୍ର ଚମକ ସେ ଯେ କଣ ନିଆଁ ସବୁ ଯାଏ ଛିନ୍ନ ଭିନ୍ନ
ଦୋଳ
ପୃଥିବୀ ଯୁକ୍ତିରେ ଲେଖି ପୋଡ଼ିଯାଏ ଜଳିଯାଏ ସବୁ
ମାଂସ ଫୁଟେ ଫୁଲ ହୋଇ ମନ ପଡ଼େ ରୋମାଞ୍ଚରେ ଶୋଇ ।

ଏଇ ପ୍ରଭାବରେ ଭଲ ପାଇବା ଅର୍ଥାତ୍ ପ୍ରେମ ହିଁ ସବୁଠାରୁ ମୂଲ୍ୟବାନ୍ ପଦାର୍ଥ । ଏ ପ୍ରେମ କିନ୍ତୁ ସର୍ବାଂଶରେ ପ୍ରାପ୍ତ ଦେହସର୍ବସ୍ୱ, ଯେଉଁଥିପାଇଁ ଯୁକ୍ତିତର୍କର ମଧ୍ୟ ସୀମା ନାହିଁ । 'ସନେଟ୍-୪' ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ।

ପୃଥିବୀର ଏ ଦେହରେ ଖୋଜି ଖୋଜି ମୁଁ ତୁମର ମନର ସନ୍ଧାନ
ଆଜି ହୁଏ ଉପଗତ ଉପକୂଳେ ତୁମର ଦେହର
ମୁଁ ତେଣୁ ତୁମକୁ ଖୋଜେ ରକ୍ତେ ମୋର ଦେହର ସୀମାରେ
ତୁମର ଆତ୍ମା ବା କାହିଁ ଦେହ କାହିଁ ତୁମର ମନର
ମୁଁ ତୁମକୁ ଭଲ ପାଏ ପୁଂଜିଭୂତ ଏ ଦେହରେ
ଆତ୍ମା ମୋର ମନର ପିପାସା
ମୁଁ ଯେଣୁ ତୁମର ଦେହ ଖୋଜେ ମୋର ଏ ଦେହରେ
ସବୁ ମୋର ଆଶା ଓ ନିରାଶା

ଏଣୁ ନାରୀ କେତେବେଳେ ଯଦି ଚମ୍ପାଫୁଲ, ଅନ୍ୟ କେତେବେଳେ ସେ ପୁଣି ସୁନାର ଝରଣା । ଦେହରେ ଫୁଟିଲ ଫୁଲର ଫୁଲଗଛ; ଯୁକ୍ତି ସବୁବେଳେ 'ଗୋଲ୍', ଆଖିରେ, ଓଠରେ, ମୁହଁରେ ବାରମ୍ବାର ତାପ ଆଉ ଜହ୍ନ, ଜହ୍ନ ଆଉ ତାପ । ଏହି ଜହ୍ନ ଆଉ

ତାର ଗୁରୁପ୍ରସାଦଙ୍କର ଅତି ପ୍ରିୟ ଉପମାନ, ଯାହା ସବୁବେଳେ ଉଲ୍ଲେଖନମୟୀ ତନ୍ୱୀ ତରୁଣୀ ପାଇଁ ସଂରକ୍ଷିତ । ଏହି ଜହ୍ନ ଓ ତାର ହିଁ ଯେପରି କ ତାଙ୍କ ଆସକ୍ତିମୟ ପୃଥିବୀରେ ଆସକ୍ତିର ପ୍ରତିନିଧି । ଜହ୍ନ ଆଉ ତାରାଆଡ଼କୁ ଛୁଟିଯିବା ତାଙ୍କ ପାଇଁ ସବୁଠାରୁ ବଡ଼ ନିଶା, ଜୀବନର ସାର୍ଥକତା । କାବ୍ୟନାୟକର ସ୍ୱପ୍ନ ହେଲା —

ତୁମର ଡାକ୍ୟରେ ମୋର ଓଠ ଯିବ ଛୁନ୍ଦ ଭନ୍ଦ ହୋଇ
ତୁମର ସ୍ମୃତିରେ ଯିବ ତଳ ହୋଇ ବାଲିଚର ନଣନ ନଘଞ୍ଜ
ତୁମର ଦେହର ରକ୍ତ ପାଣି ପାଟି ଅଣ୍ଡା ହୋଇଯିବ
ତୁମର ଭିତରେ ମୋର ଆତ୍ମା ଯିବ ନିଶ୍ଚିହ୍ନ ମିଳାଇ !

( 'ପ୍ରିୟକ ହୃଦୟ' )

ଏହି ଦେହ ଭିତରେ ହିଁ ଯେପରି କ ଅଦ୍ୱୈତବାଦର ସାଧନା । ସ୍ୱର୍ଗ ବୋଲି କିଛି ନାହିଁ, ଅମରତ୍ୱ ବୋଲି କିଛି ନାହିଁ, ସବୁ ଏହି ଦେହ । ଡ଼ି. ଏଚ୍. ଲରେନ୍‌ସଙ୍କ ପରି ସେ ଯେପରି କହିବାକୁ ଚାହାନ୍ତି : 'Immortality, the heaven is only a projection of the strange but actual fulfilment here in the flesh.' ସ୍ୱର୍ଗ ଏକ ଅଧ୍ୟାସ, ଏକ ଆରୋପ ମାତ୍ର, ରକ୍ତମାଂସର ତୃପ୍ତି ଭିତରେ ସ୍ୱର୍ଗସୁଖ, ଅମରତ୍ୱ । ହାଡ଼ ଆଉ ମାଂସର ସ୍ପନ୍ଦନ ଶୁଣିବାକୁ ହେବ । ଉପେନ୍ଦ୍ରଭଞ୍ଜଙ୍କ ପରି ଗୁରୁପ୍ରସାଦ ମଧ୍ୟ ସତେ ଯେପରି କହିବାକୁ ଚାହାନ୍ତି ନାସ୍ତି ହେଉଛି 'ସୁବାବଳିକୁଣ୍ଡପୁର' କିମ୍ବା 'ଯାହାର ସୁବା ବୟସେ ମନର ସୁବନ୍ତି ପାଶେ ନାହିଁ ତାର ଜୀଇଁବାରେ କ ପ୍ରୟୋଜନ' । ଗୁରୁପ୍ରସାଦଙ୍କ କବିତାରେ ଦେହର ଗୁରୁତ୍ୱ ସମ୍ପର୍କରେ କୌଣସି ସନ୍ଦେହ ନାହିଁ, ତାହା ସୁପରୀକ୍ଷିତ । ଯଥାର୍ଥରେ କୁହାଯାଇଛି, 'ଦଇହିକ ଦୃଷ୍ଟିକୋଣରୁ ଦେହର ବର୍ଣ୍ଣନା ଗୁରୁପ୍ରସାଦଙ୍କ କବିତାରେ ଦେଖିବାକୁ ମିଳେ ।

ବାରମ୍ବାର ଏହାର ବ୍ୟବହାର ଏହାର ପ୍ରାଧାନ୍ୟ ସୂଚାଇଥାଏ । ସମସ୍ତ କବିତାରେ ଦେହ ଶବ୍ଦଟି ପ୍ରାୟ ୧୨୦ଥରରୁ ଅଧିକ ବ୍ୟବହାର ହୋଇଅଛି । ଏହି ସଂଖ୍ୟା ସୂଚେଇ ଦିଏ କବିଙ୍କ ମନରେ ଦେହ ଚେତନା କେତେ ଦୂର ପ୍ରସାର କରିଛି । ଏହା ତାଙ୍କ କବିତାର ଗୋଟିଏ ମୁଖ୍ୟ ଧାରା ନୁହେଁ, ଏହା ହିଁ ତାଙ୍କର କବିତା '।

('ଦେହ ଓ ଅଦେହର କବି ଗୁରୁପ୍ରସାଦ' ସୌମେନ୍ଦ୍ର ବାରିକ,
ଇସ୍ତାହାର, ପୃ.୫୧-୫୨)

ଦେହ ଭିତରେ ମୁକ୍ତିର ସ୍ୱପ୍ନ ଶେଷ ପର୍ଯ୍ୟନ୍ତ କିନ୍ତୁ ସଫଳ ହୋଇ ପାରେନାହିଁ । ଯାହାଫଳରୁ ଅସାଧାରଣ ପ୍ରତୀକ୍ଷା ଏବଂ ଏକ ଭ୍ରାନ୍ତ ଅପେକ୍ଷାରେ ପରିଣତ ହୁଏ । ଶୂନ୍ୟତା, ବିଚ୍ଛିନ୍ନତା, ନିଃସଙ୍ଗତା ଜୀବନର ପ୍ରକୃତ ସ୍ୱରୂପ । କବିଙ୍କ ହରେକୃଷ୍ଣ ଦାସ ହୁଅନ୍ତି —

ସବୁଜ କବିତା ପରି ହୁଏତ ବା ଏ ପୃଥିବୀ
ରୋମାଣ୍ଟିକ୍ ସ୍ୱପ୍ନାଭ ସୁନ୍ଦର
ନେରୁଦାର ଗୀତ ପରି ହୁଏତ ବା ଏ ଜୀବନ
ଦେହହୀନ କେତୋଟି ମୂର୍ଚ୍ଛନା
'ଧୂସର' ବିହଙ୍ଗ ପରି ହୁଏତ ବା ଏହି ମନ
ଆକାଶର ଭବଘୁରା ମେଘ
ହୁଏତ ବା ଏହି ଦେହ ପଦ୍ମ ସର ନୀଳ ନୀରେ
ନାଗଲୋକ କନ୍ୟାର କାମନା । ('ସମୁଦ୍ରସ୍ନାନ' ପୃ.୩୦)

କିନ୍ତୁ ଏ ସବୁ 'ହୁଏତ ବା', — ଏଥିରେ ନୈଶ୍ଚିତ୍ୟ ନାହିଁ । ପରେ ପରେ ହରେକୃଷ୍ଣ ଦାସର ସ୍ପଷ୍ଟୋକ୍ତି —

ତଥାପି ଶୀତର ଥଣ୍ଡା ସତ ଆଉ କୁହୁଡ଼ିର
ଧୂଆଁଳିଆ ଦେହ

ଗଳିରୁ ଗଳିକୁ ବୁଲିଁ ବୁଲିଁ ଲେଟର ପୋଷ୍ଟ
ବଙ୍ଗାଳିଆ ସ୍କୁଲ ପିଲା ପରି
ଚଞ୍ଚୁସ୍ତ ବଜାରର ଆଲୁଅ ଓ ଠେଲାଠେଲି
ଗହଳି ଭିତରେ
ଏ ପୃଥିବୀ ଜଣାଯାଏ ବନ୍ଧୁହୀନ କ୍ଳାନ୍ତିହୀନ
କେଉଁ ଏକ ଦୂରଦେଶ ପରି । ( ସମୁଦ୍ରସ୍ନାନ, ପୃ.୩୦ )

ସମ୍ପର୍କ ସମ୍ଭବ ନୁହେଁ, ସଂଯୋଗ ସମ୍ଭବ ନୁହେଁ, ତାହାସତ୍ତ୍ୱେ ତାହାର ବନ୍ଧୁତା ଅସମ୍ଭବ । ସବୁ କିଛି କେବଳ 'ନାହିଁ' । ଦୂର ଦେଶଟି ଯେପରି, କଳେଟର ପୃଥିବୀଟି ବି ସେହିପରି । ବନ୍ଧୁହୀନ ଓ କ୍ଳାନ୍ତିହୀନ । ସମ୍ପର୍କର ଜଗତଟି ଯେଉଁଠି ଏହିପରି, ସେଠି ପ୍ରେମରେ ନିଶ୍ଚିନ୍ତ ସାର୍ଥକତା ଏକ ମିଛକଥା । କୁହୁଡ଼ି । ସମୁଦ୍ରରେ ସ୍ନାନ ନୁହେଁ, ସମୁଦ୍ରସ୍ନାନ ନାଁରେ ଫେଣ ଚୁମୁଥିବା ମାତ୍ର । ତାହା ସତ୍ତ୍ୱେ ରହିଛି ସମୟର ତୀକ୍ଷ୍ଣାଗ୍ର ଦନ୍ତର ଦଂଶନ ଓ ଦେହର ଦ୍ରୁତ କ୍ଷୟଶୀଳତା । କାବ୍ୟ ନାୟକର ଅନୁଭୂତି ହୋଇ ଉଠେ ମାଇଲ ମାଇଲ ବ୍ୟାପୀ ବିଫଳତାର ବାଲୁକା ବିସ୍ତାର ମାତ୍ର । ଯେତେଦୂର ଯାଏ ଗୁଳ୍ମ ଚଉପାଶେ ଖାଲି ବାଲି, ନାହିଁ କାହିଁ ଶ୍ୟାମ ଶସ୍ୟ ନବ ଦୂର୍ବାଦଳ । ରାଧାନାଥଙ୍କ ହତାଶ କାବ୍ୟନାୟକ ଥରେ ଗାଇଥିଲେ —

ଭାଗ୍ୟଧର ଭାଗ୍ୟ    ଆକାଶେ ଶୋଭିବ
ତା'ର ରୂପେ ଏ ନବୀନା
ମୋ ଭାଗ୍ୟେ ନୁହଇ    ଆଶାର ତାରାଏ
ଦୁରାଶାର ଉଲ୍କା ସିନା । ( 'ଯଯାତିକେଶରୀ' )

ଗୁରୁପ୍ରସାଦଙ୍କ କ୍ଷେତ୍ରରେ ଭାଗ୍ୟ ଫାଗ୍ୟ କଥା ଉଠୁନାହିଁ । ତା'ର ନୈରାଶ୍ୟ ନାହିଁ, ଅଛି ସମ୍ପୂର୍ଣ୍ଣ ବିଫଳତା । କାବ୍ୟନାୟକକୁ ଶୂନ୍ୟ ଲଣ୍ଡୁଭୁମ୍ବା ଧରି ଫେରି ଆସିବାକୁ ପଡ଼େ, ଶୂନ୍ୟତାର ଦୁଃସହ

ଯନ୍ତ୍ରଣା ଭିତରେ ବିଫଳତାର ନିରର୍ଥକ ନୀରବ ଶବ୍ଦ'ର ହୋଇଉଠେ ତାର ଜୀବନ ।

ମୋ ପାଇଁ ଚଳିତ କେବେ ଯାଇ ନାହିଁ ପତ୍ରର ଥରାଇ
ମୋ ପାଇଁ ଗଳିର ମୋଡ଼ କେବେ ହେଲ
ତେଇଁ ଉଠି ନାହିଁ
ଯେତେ ଯୁକ୍ତି ତର୍କ ଯେତେ ସବୁ ବାଦ
ପ୍ରତିବାଦ ପରେ
ମୋ ପାଇଁ ପଡ଼ିଛି ରହି ଯୁକ୍ତି ଆଉ ବିଯୁକ୍ତ ମୀମାଂସା
ଏକମାତ୍ର ସମାଧାନ ମୋର
ମୁଁ ଏଠି ଚମକ ଦେଖେ ପଥ ଝୁଣ୍ଟେ
ଟୁଣ୍ଡା ଚେଲ ଗୁଣ୍ଡା ହୋଇ ରହେ
ବଢ଼ନ୍ତି ପରେ ବଢ଼ନ୍ତି ଦିନ ସମସ୍ୟାର ଆଶିଠାର ମାରି
ଛାଉଁଠର ପାଙ୍କ ପରି ପଡ଼ି ରହେ ଏଇ ଗଳିମୋଡ଼ ।
( 'ଗୋବର ଗଣେଶ' )

ଗୁରୁପ୍ରସାଦଙ୍କ କବିତାକୁ 'ଗଭୀର ଅନୁଭୂତିରୁ ଜାତ ଅସଫଳତାର ଏକ ଛବି' ବୋଲି ଅଧ୍ୟାପକ ସୌଗନ୍ଧ ବାରିକ ଯାହା କହିଛନ୍ତି ତା' ସତ୍ୟ । ( ଉତ୍ତରାଭାସ-୨, ପୃ. ୫୫ ) 'ଚମ୍ପାଫୁଲ' କବିତାଟି ପଢ଼ି କବିଙ୍କ ସମ୍ପର୍କରେ କେହି ଯଦି ଶେଷ ଧାରଣା କରି ବସନ୍ତି, ସେ ନିଶ୍ଚୟ ଚରମ ଭୁଲ କରି ବସିବେ । 'ଚମ୍ପାଫୁଲ' ସୁଦୂର କେଳାଭୂମିରୁ ସୁଦୂରତମ ସମୁଦ୍ରର ଆପାତସୁନ୍ଦର ଏକ ସ୍ୱପ୍ନ'ଛବି ମାତ୍ର । 'ସମୁଦ୍ରସ୍ନାନ'ର ତାହା ପ୍ରକୃତ କି ଚୂଡ଼ାନ୍ତ ଅନୁଭୂତି ନୁହେଁ, ସେଥିରେ ପ୍ରକୃତ ସମୁଦ୍ରସ୍ନାନର ଅଭିଜ୍ଞାନ ନାହିଁ । 'ସମୁଦ୍ରସ୍ନାନ'ର କାବ୍ୟନାୟକର ବାସ୍ତବ ଅନୁଭୂତି ଘୋର ଲବଣାକ୍ତ ଝଡ଼ସଂକୁଳ, ଆଉ ତିମି ତିମିଙ୍ଗିଳର କଥା । ତାହା ନୈରାଶ୍ୟର ବିଷାଦର, ଦୁଃଖର, ବେଦନାର, ଯନ୍ତ୍ରଣାର,

ବ୍ୟର୍ଥତାର, ବିଫଳତାର, ଯନ୍ତ୍ରଣାର, କାତରତାର, କାରୁଣ୍ୟର, ସ୍ୱପ୍ନର, ପତନର, ବିନାଶର । ଅନ୍ଧାର, ମୌଳିକ ପରମ୍ପରା, ମ୍ଳାନ ବୈବର୍ଣ୍ଣ ସନ୍ଧ୍ୟା, ଗର୍ତ୍ତ ଓ କୋରଡ ଆଖି, ଚେପା ଗାଲ ଓ ଥୁଣ୍ଟ, ଛେପ ଢୋକ ତଣ୍ଟି ଶୁଖିଯାଏ, ତଥାପି ତଥାପି କଣ୍ଠରୁ ଝରିଯାଏ ହୋଇନ ସମ୍ଭବ, ତା' ଓଠର ଫାଙ୍କ ଫାଟ ଫାଡ଼ ଦେଇ ଏଣ୍ଡୁ ଗଳମୋଡ଼, କଣ୍ଠ ନାଳି ତାରନାଳି, ଅଗଣିତ ମମତାର ଶୁଷ୍କତାକ୍ଷ କୁଢ଼ କୁଢ଼ ଜଳିଛନ୍ତି. ହାଡ଼ରୁ ଫାଟି ମାଂସ ଖସି, ଆକାଶରେ ମେଘ ଆଉ ମେଘ, ନିଶବ୍ଦ କାଳରାତ୍ର, ପଡ଼ୋଶର ପଳାତ ମୂର୍ଚ୍ଛନା, ବର୍ଷଟିଏ ଖସିଯାଏ ଆଉରି ଖସିଯାଏ ପୁଞ୍ଜୀଭୂତ ବ୍ୟର୍ଥତା, ଗର୍ଭର ପ୍ରସୂତି କଷ୍ଟ ସକାଳର ତୁଷାର ଜନ୍ମନେବା, ଜୀର୍ଣ୍ଣ ଚଇତର ଜରାଗ୍ରସ୍ତ ବିବର୍ଣ୍ଣ ଦେହ, ନିସ୍ପୃହିଆ ଘର, ସମୁଦ୍ରର ଢେଉରେ ନିରର୍ଥକ ଚେଷ୍ଟା ଆଉ ନଷ୍ଟ ଯେତେ ଆଶ୍ରୁଷର କ୍ରୋଧ, କୁହୁଡ଼ି, କାଠୋଇ ପକ୍ଷୀର ଗୀତ ମରିଗଲାଣି, ଭ୍ରାନ୍ତ ଅପେକ୍ଷା, ଦୁରନ୍ତ ଓ ଦୁର୍ବିସହ ଘୂର୍ଣ୍ଣାବର୍ତ୍ତ, ଖସ ପଡ଼ର ତପ୍ତ ଧୂସରତା, କୁହୁଡ଼ି ଓ କାକରର ଗତି, ସମୁଦ୍ରର ମରୁଭୂମି, ଆକାଶର ନିଃସଙ୍ଗତା, ବର୍ଷର ନିଷ୍ଠୁ ଆତ୍ମା, ଅବସନ୍ନ ସହର, ନିଷ୍ଫଳ ସ୍ବପ୍ନର ଦେହ, ନିହତ ଗୋଧୂଳି, ଗନ୍ତବ୍ୟହତ ପଥଭ୍ରାନ୍ତ ନିର୍ବାକ ଅନାଇଁବା, ବନ୍ଧୁହୀନ ଜ୍ଞାତିହୀନ ଅନ୍ୟଦେଶ, ସୂର୍ଯ୍ୟ ନିଭିଯାଏ, ଭସ୍ମ ଆଉ ପାପ, ଜୀବନର ଭଗ୍ନାଂଶ, ଘୋର ଦୁର୍ଦ୍ଦିନ, ନିଶବଦ ମଶାଣିର ଜଳିଗାଡ଼ ମଡ଼ିଶା ଓ ଶୁଣ୍ଡ୍ରାକନା ଖପର, କୁଢ଼ କୁଢ଼ ମୁଣ୍ଡ ମୁଣ୍ଡ ବାଳ ଓ ଅଙ୍ଗାର, ଅଣ୍ଡା ଆଖି ଡୋଳା ତଳେ ଖାଲି ବ୍ୟର୍ଥ ଅବ୍ୟକ୍ତ ବିଷାଦ, ସ୍ତବ୍ଧ ଗତିହୀନ ସ୍ତବ୍ଧ ଗତିହୀନ ଜମାଭୂତ ନିସ୍ପନ୍ଦ ନିଥର ନିଶବ୍ଦ ମୁହୂର୍ତ୍ତ, କାଠର ନିର୍ବଶ ଅଉ ରକ୍ତମାଂସ ସ୍ନାୟୁର ବିରକ୍ତି, ଯାହାର ଧୂସର କ୍ଳାନ୍ତି, ମୃତ୍ୟୁର ନିଶବ୍ଦ ସଂହାର, ସମୟର ହାହାକାର, ମୃତ୍ୟୁର ଚରମ ଶୂନ୍ୟତା, ସମୟର ହାତ, ହଳଦିଆ ପୃଷ୍ଠା ଯେତେ ସମୟର,

ପ୍ରେମିକର ହାହୁତାଶ, ଆଦରସ୍ୱପ୍ନ, ଝଡ଼ନ୍ତ ଫୁଲ ମୂର୍ଚ୍ଛ ପଡ଼ନ୍ତି ଓ ଶବ୍ଦ ହେବନ୍ତି — ଏଇଥିରେ ଗଢ଼ା ମେଳ ନଗର । ପାଣି ବୁନ୍ଦାଟିଏ ପାର୍କ, ଗଳି ପହାଡ଼ ଆଉ ପାହାଡ଼ । ଗୁରୁପ୍ରସାଦଙ୍କର ଏ ଜଗନ୍ନଟିର ପ୍ରମୁଖରୂପକ (Major Metaphor) ହୋଇ ଦେଖାଦେଇଛନ୍ତି ବାଲି । ଜହ୍ନ ଓ ତାରାର ଗାଙ୍କର ସ୍ୱପ୍ନ ବାରମ୍ବାର ଏକ ବାଲୁକାଘର ଅନୁଭୂତିରେ ମିଶ୍ରୁମାଣ ହୋଇଉଠେ ।

( କ ) ମୁଁ ଫେରେ ଟହର ସବୁ ବୁଢ଼ା ହୋଇଯାଏ ଶୀତଋତୁ
ଦେଖିସବୁ ଗୁମ୍ଫବଣି ବେଳେ ପ୍ରି ଛିଣ୍ଡାଳୁଗା ଭଙ୍ଗା କୋଠାଘର
ଧାନ କ୍ଷେତ ପାର୍କ ନେଇଁ ମୃତିଟିକେ କେଉଁ ଅଗତର
ଏଠି ମୋର ସ୍ମୃତିପାଖେ ବାଲିଚର ଖାଲି ବାଲିଚର ।
( ପ୍ରିୟବାଂଧବୀ )

( ଖ ) ସମୁଦ୍ରବାଲିରେ ଜହ୍ନ ଆଜ ଦୁଏ ଉତସ୍ତତ
ଆକାଶରେ ହେଉ ଆଜ ମେଘ
ଜହ୍ନ ଯାଏ ତା' ଭିତରେ ମରି ହଜ ନିର୍ବିବାଦେ
ସମୁଦ୍ରବାଲିରେ ସ୍ୱପ୍ନ କାହାର ବା ବେଦନା କାହାର ।
( ଶରତ ଋତୁରେ ଜହ୍ନ )

( ଗ ) ଏକରେ ଅନ୍ଧାର ଉଠେ ଗିଳି ରେଖା ଆକାର ପ୍ରକାର
ସୀମିତ ମୋ ପୃଥିବୀର ଶତ ହଜେ ହଜଯାଏ ଉପର ଓ ତଳ
କ୍ଳାନ୍ତ ମୋର ଦେହ ଲୁପି ମାଡ଼ି ଆସେ ବାଲିଚର
ବାଲି ଓ ଅନ୍ଧାର
ପାଦ ଯେବେ ଛନ୍ଦ ହଏ ଅନ୍ଧାରରେ ଗୁଡ଼ିକଙ୍କ ନଥା
ଦେହ ମୋର ଘେରି ରଖେ ଲୁପ ଲୁପ କୁଡ଼ କୁଡ଼
ବାଲି ଓ ଅଙ୍ଗାର । ( କାଳପୁରୁଷ )

ପାରମ୍ପରିକ ସାମୟିକ ମୁକ୍ତି ତା'ର କାମ୍ୟ ନୁହେଁ । ଏଇ ଜୀବନ ଭିତରେ ଦେହ ଓ ପ୍ରେମ ଭେଇ ସେ ଖୋଜେ ସାର୍ଥକତା ।

କିନ୍ତୁ ତାହା ସଫଳ ହୁଏନାହିଁ । ସମସ୍ତଙ୍କ, ମୃତ୍ୟୁର ହିମ ଶୀତଳ ସ୍ପର୍ଶ ତାର ଲମ୍ବିଆସେ । ବିଫଳତାର ଏକ ଦୀର୍ଘ ବାଲୁଚର ହୋଇ ଉଠେ କାବ୍ୟନାୟକର ଅନୁଭୂତିର ବାସ୍ତବ ଭୂମିକା-ଷାଂଶ ଉପରେ ଗଢ଼ିଉଠେ ଏକ ବିଷଦକାମ୍ୟ ଜୀବନ ଜିଜ୍ଞାସାର ସ୍ବରୂପ । 'ସମୁଦ୍ରସ୍ନାନ' ସେହି ଜୀବନ ଜିଜ୍ଞାସାର ଏକ କାବ୍ୟିକ ଉପଲବ୍ଧି ଓ ଉପସ୍ଥାପନା । ସଂକ୍ଷେପରେ କହିବାକୁ ଗଲେ, ଦେହ ଭିତରେ ଗୁରୁପ୍ରସାଦ ଖୋଜୁଛନ୍ତି ଜହ୍ନ ଆଉ ତାରା, ପାଉଛନ୍ତି କେବଳ ବାଲି ଆଉ ବାଲି । ଗୋଟିଏ ଦିଗରେ ଜହ୍ନ ଓ ତାରା, ଏବଂ ଅନ୍ୟ ଦିଗରେ ବାଲି ଏହା ହିଁ ଯେପରି ତାଙ୍କର ନିୟତି । ଆଶାର ନୁହେଁ, ଗୁରୁପ୍ରସାଦଙ୍କ ଜୀବନ ଜିଜ୍ଞାସା କେବଳ ନୈରାଶ୍ୟର କଥା କହୁଥାଏ । ରାଧାନାଥଙ୍କ ପରେ ନୈରାଶ୍ୟବାଦର ସ୍ବର ଅନ୍ୟ କୁଆପି ଏମିତି ଗମ୍ଭୀର ଭାବରେ ଶୁଣା ଯାଇ ନଥିଲା । ଆଜିର ମଣିଷର ନୈରାଶ୍ୟପୂର୍ଣ୍ଣ ଭବିଷ୍ୟତ ସମ୍ପର୍କରେ ଗୁରୁପ୍ରସାଦଙ୍କର ଗୋଟିଏ କାବ୍ୟାଂଶ ଉଦ୍ଧାର କରି ଏ ଆଲୋଚନା ଶେଷ କରାଯାଇପାରେ ।

ଅପରାଜିତାର ଗାଢ଼ ବାଇଗଣି ବଳୟ ଉପରେ
ସୂର୍ଯ୍ୟ କେବେ ଉଭିଯାଏ ମୁହଁ ଭୁଙ୍କ ହଳଦିଆ ପ୍ରଜାପତି ପରି
ମଣିଷର କେତେ ସ୍ବପ୍ନ ଆଶା ଓ ନିରାଶା କେତେ ଯୋଜନା ଓ
କମିଟି ଭିତରେ
ସୂର୍ଯ୍ୟ କେବେ ଲିଭିଯାଏ ଆସ୍ତେ ଆସ୍ତେ ସ୍ଲେଟ ହୋଇ
ବ୍ୟାଟେରି ନ ଥିବା ସାନ ଟର୍ଚ୍ଚ ଲାଇଟ୍ ପରି । ୩୦ ।

( ହରେକୃଷ୍ଣ ଦାସ-୨ )

# ଗୁରୁପ୍ରସାଦଙ୍କ କାବ୍ୟଶୈଳୀ


## ଗୋବିନ୍ଦଚନ୍ଦ୍ର ନାୟକ


ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଗୁରୁପ୍ରସାଦ ମହାନ୍ତି ଏକ ସୁପରିଚିତ ନାମ । ଦୁଇଟି କବିତାକୁ ଛାଡ଼ିଦେଲେ ତାଙ୍କର ଅନ୍ୟାନ୍ୟ କବିତା ପୃଥକ 'ସମୁଦ୍ରସ୍ନାନ' କବିତା ଗ୍ରନ୍ଥରେ ସନ୍ନିବେଶିତ ହୋଇଅଛି । କବିତାମାନଙ୍କର ସମୁଦାୟ ସଂଖ୍ୟା ଅଠାଇଶି । ଏତେ କମ୍ ସଂଖ୍ୟକ କବିତା ରଚନା କରି କୌଣସି ଓଡ଼ିଆ କବି ପକ୍ଷରେ ଏତେ ସାର୍ଥକ ଶିଳ୍ପୀ ହେବାର ସୁଯୋଗ ଓ ସୌଭାଗ୍ୟ ମିଳିନାହିଁ । କବିତା ଗ୍ରନ୍ଥର ପ୍ରାରମ୍ଭରୁ ଦେଖାଯାଏ ଯେ ସେ ସିଦ୍ଧିର ଶୀର୍ଷ ଦେଶରେ । ବାର୍ନାର୍ଡ ଶ' କୌଣସି ଏକ ପ୍ରସଙ୍ଗରେ କହିଥିଲେ ଯେ କୌଣସି ବ୍ୟକ୍ତି ପର୍ବତ ଆରୋହଣ କରିବାରେ ଅନେକ ସମୟ ବିତାଇ ଦେଇପାରନ୍ତି; କିନ୍ତୁ ତାର ଶୀର୍ଷରେ ଅଧିକ କାଳ ଅବସ୍ଥାନ କରିବା ତାଙ୍କ ପକ୍ଷେ ସଂଭବ ନୁହେଁ । ବୋଧହୁଏ ସେଇଥିପାଇଁ ଆମେ ଗୁରୁପ୍ରସାଦଙ୍କର ମାତ୍ର ଅଠେଇଶିଟି କବିତା ଦେଖିବାକୁ ପାଉଁ । ଉଭୟ ଦେହ ଏବଂ ଆତ୍ମାରେ କବିତାମାନଙ୍କର ଐକତାନ ଏପରି ସୁସଂହତ ଯେ ପରିମାଣ ଦୃଷ୍ଟିରୁ ଆହୁରି ଅଧିକ କବିତା ରଚନା କରିବା ସମ୍ଭବ ହୋଇପାରିନାହିଁ । ଗୁରୁପ୍ରସାଦ କୌଣସି ନୂତନ ଶୈଳୀ ( ଛନ୍ଦ ଯୋଜନାଗତ )ର ସୂତ୍ରପାତ କରିନାହାନ୍ତି । ତାଙ୍କର ପୂର୍ବରୁ ଏବଂ ପରେ ବହୁ କବି ସେହି ଛନ୍ଦକୁ ନେଇ ପରୀକ୍ଷା କରିଛନ୍ତି । କିନ୍ତୁ ଏପରି ସୃଟିରକ୍ଷିତ ଏବଂ ନିର୍ଭୁଲ ଆନୁପାତିକତା କ୍ୱଚିତ୍ ଦୃଷ୍ଟିଗୋଚର ହୋଇଥାଏ । କବି ସାର୍ଥକତାର ଶୀର୍ଷବିନ୍ଦୁରେ ପହଂଚି ସାରିବା ପରେ ଏତେ ପରିମାଣରେ ବିମୁଗ୍ଧ ହୋଇଛନ୍ତି ଯେ ଆଉ କୌଣସି ପରୀକ୍ଷା ନିରୀକ୍ଷାରୁ

ନିବୃତ୍ତ ରହିଛନ୍ତି । ଏଣୁ ପ୍ରତ୍ୟେକ କବିତା ଏକପ୍ରକାର ଚେତନ ଶୈଳୀରେ ଗ୍ରସ୍ତ ହେବାପରି ମନେହୁଏ । ଗୁରୁପ୍ରସାଦଙ୍କର କାବ୍ୟଶିଳ୍ପର ମହନୀୟତା ରହିଛି, ଔଚିତ୍ୟ ପ୍ରତିଷ୍ଠା ପାଇଛି, କିନ୍ତୁ ସେମାନଙ୍କର ଶୃଙ୍ଖଳାର ନମୁନା ନାହିଁ । କବିତାମାନଙ୍କରୁ କବିଙ୍କର ଛନ୍ଦଜନିତ ଶିଳ୍ପଯୋଜନା ଲକ୍ଷ୍ୟ କରିବା ଏ ପରିଚ୍ଛେଦର ଉଦ୍ଦେଶ୍ୟ ।

'ସମୁଦ୍ରସ୍ନାନ'ର କବିତାଗୁଡ଼ିକୁ ଅଧ୍ୟୟନ କରିବା ସମୟରେ ଯାହା ପ୍ରଥମେ ଆଖିରେ ପଡ଼େ ତାହା ହେଲା କବିଙ୍କର ପୁନରାବୃତ୍ତି ଶୈଳୀ । କେତେବେଳେ ଖଣ୍ଡବାକ୍ୟ, କେତେବେଳେ ବା ନିର୍ଦ୍ଦିଷ୍ଟ କେତୋଟି ଶବ୍ଦର ପୁନରାବୃତ୍ତି କରି କବି ଯମକର ଭ୍ରମ ସୃଷ୍ଟି କରିଅଛନ୍ତି । କିନ୍ତୁ ତାହା ଯମକ ନୁହେଁ । କବିତାର ଭାବ ତଥା ଧ୍ୱନିର ପୁନରାବୃତ୍ତି କରିଅଛନ୍ତି, କିନ୍ତୁ ତାହା ଦ୍ୱିରୁକ୍ତି ନୁହେଁ । ଏହି ନିର୍ଦ୍ଦିଷ୍ଟ ତଥା ସୁନିର୍ବାଚିତ ପଦଗୁଡ଼ିକ କାବ୍ୟଶ୍ରୀ ବୃଦ୍ଧି କରିବାରେ ସହାୟକ ହୋଇଅଛନ୍ତି । କାବ୍ୟରଚନାରେ ଯମକ, ଅନୁପ୍ରାସ ଯୋଗକରି ନିରେଖ ଧ୍ୱନି ଅନୁରଣନର ବ୍ୟବସ୍ଥା ମଧ୍ୟଯୁଗୀୟ କାବ୍ୟ ପରଂପରାରେ ବହୁପରିମାଣରେ ଦେଖିବାକୁ ମିଳିଥାଏ । କିନ୍ତୁ ଭାବର ଅନୁରଣନ ଓଡ଼ିଆ କାବ୍ୟ ପରଂପରାରେ ଏକ ନୂଆ କଥା । ଏହା ନିଶ୍ଚିତ ରୂପେ ଆଧୁନିକ ଇଂରାଜୀ କାବ୍ୟପରଂପରାର ଏକ ବିଶିଷ୍ଟ ଦିଗ । ସମସାମୟିକ କବିଗଣ, ବିଶେଷ କରି ଇଲିଅଟ୍ କାବ୍ୟଧୀଷଣାର ଏହା ମଧୁମୟ ଫଳ । ଜୀବନାନନ୍ଦ ଦାସ ବଙ୍ଗଳା କବିତା କ୍ଷେତ୍ରରେ ଯେପରି ଏହାର ପରୀକ୍ଷା ନିରୀକ୍ଷା କରିଅଛନ୍ତି, ସେହିପରି ଗୁରୁପ୍ରସାଦ ଓଡ଼ିଆ କବିତା କ୍ଷେତ୍ରରେ ଏହାର ପ୍ରୟୋଗ କରିଅଛନ୍ତି । T.S. Eliotଙ୍କର 'The Waste Land' କିମ୍ବା 'Four Quartets' ରେ ଏହାର ବହୁଳ ବ୍ୟବହାର ଦେଖିବାକୁ ମିଳିଥାଏ ।

My nerves are bad to night. yes bad .
Stay with me, speak to me .
Why do you never speak . speak .
What are you thinking of ? What ?
I never know what you are thinking Think .
[ The Waste Land ]

ଉପରୋକ୍ତ ଉଦାହରଣଟିରେ ଛନ୍ଦ ଏବଂ ଶବ୍ଦର ସାର୍ଥକ ଅନୁରଣନ ଦେଖାଯାଏ । 'କାଳପୁରୁଷ'ଠାରୁ ଆରମ୍ଭ କରି ଅନ୍ୟାନ୍ୟ କବିତା-ମାନଙ୍କ ପର୍ଯ୍ୟନ୍ତ ଏହା ସର୍ବତ୍ର ବ୍ୟାପ୍ତ ହୋଇଅଛି । କବି କେଉଁଠି ପୁନରାବୃତ୍ତିକୁ କେବଳ ଧ୍ୱନି ଦୃଷ୍ଟିରୁ ଗ୍ରହଣ କରିଅଛନ୍ତି ଏବଂ ଗୋଟିଏ ଶବ୍ଦକୁ ବାରମ୍ବାର ବ୍ୟବହାର କରି ( ଗୋଟିଏ ଶବ୍ଦକୁ ଦୁଇ ବା ତତୋଧିକବାର ପ୍ରୟୋଗ କରି ) କବିତାକୁ ଶ୍ରୁତିମଧୁର କରିଅଛନ୍ତି । ଯଥା --

୧-ଅସମାପିକା କ୍ରିୟାପଦ ଯୋଗେ :—

ଆଜ ଯେବେ ସନ୍ଧ୍ୟାବେଳେ ପଥସବୁ ଝୁରିଝୁରି ପଡ଼େ
ନିଭୁଛି ଏ ଏଗଳିରୁ ସନ୍ଧ୍ୟାଯାଏ ଲୁଚିଲୁଚି ଛପି ଛପି
ପ୍ରେମିକର ମନ ( ଗୋବର ଗଣେଶ )

୨ ବିଶେଷଣ ପଦର ଦ୍ୱିରୁକ୍ତି ଯୋଗେ .—

ଉତ୍ତପ୍ତ ଉତ୍ତାପର ଝଡ଼ ଗାଲି ନାଲି ବେତନୀଳ ଖଜୁରି ଫୋଲିର
ପତ୍ରସବୁ ଝଡ଼ଯାଏ ଗୋଟିଗୋଟି ଧକ ଧେଇଁ ଯାଏ
( ସନେଟ-୩ )

୩ ଅବ୍ୟୟ ପଦର ଦ୍ୱିରୁକ୍ତିଯୋଗେ :—
ମୁଁ ତୁମକୁ ଖୋଜିପିବି ଆଜପରି ତଥାପି ତଥାପି ( ସନେଟ-୩ )

ତଥାପି ତଥାପି କହୁ ଆଜଯାଏ ହୋଇନ ସମ୍ଭବ
( ଗୋବର ଗଣେଶ )

ସିଗାରେଟ୍ ଡିଆପିଲ ଯଥେଷ୍ଟ ଯଥେଷ୍ଟ ( ଗୋବର ଗଣେଶ )

୪ ଧ୍ୱନ୍ୟାତ୍ମକ ଶବ୍ଦର ବ୍ୟବହାର ଯୋଗେ :—

ଘୁଇଯାଏ ଆକାଶରେ କାଚ ଆଉ ଝକ୍‌ଝକ୍ ନଗର କାଗଜ
ତା ଭାଜର ଦୁଲ୍‌ପଣ ଝିକିମିକି ଏକ୍ସ'ର ଆଲୁଅ
ତା ଉପର ଆତ୍ମ ଆକେ ଝିକିମିକି ଶବ୍ଦଗନ୍ଧ ତାରା
( ଗୋବର ଗଣେଶ )

୫ ବିଶେଷ୍ୟ ପଦର ଦ୍ୱିରୁକ୍ତି :—

ରଜାଝିଅ ବେଣୀଫୁଲ ଖସିଗଲା ଯୁଏ ଯୁଏ ଭାସି ( ଚମ୍ପାଫୁଲ )

୬ ନିରର୍ଥକ ଶବ୍ଦଯୋଗେ :—

ଏ ଅନ୍ଧାର ଶୋଇପଡ଼େ ଜାକଯୁକ ମର୍ବିବାତେ
ଝଣଝଣ ଧୋଡ଼ଧାଡ଼ ହୋଇ ( କପୋତ କପୋତୀ[1] )

ଗୁରୁପ୍ରସାଦ ମହାନ୍ତିଙ୍କର କବିତାରେ ଉଲ୍ଲେଖ ଯୋଗ୍ୟ ଘଟଣା ଏହି ଯେ ଅସମାପିକା କ୍ରିୟାପଦ ଗୁଡ଼ିକୁ ସେ ଅନେକ ସ୍ଥଳରେ ଦ୍ୱିରୁକ୍ତ କରିଅଛନ୍ତି । କେବଳ 'ଗୋବର ଗଣେଶ' କବିତାରେ ଆଠଥର ଏହି ପ୍ରକ୍ରିୟାକୁ ବ୍ୟବହାର କରାଯାଇଅଛି । ଉପରୋକ୍ତ ଉଦାହରଣରୁ ଏହା ସୂଚିତ ହୁଏ ଯେ କେବଳ ମାତ୍ର ଅନୁପ୍ରାସର ଲାଳିତ୍ୟ ଉଦ୍ଦେଶ୍ୟରେ ଗୋଟିଏ କିମ୍ବା ଦୁଇଟି ଶବ୍ଦକୁ ପାଖାପାଖି ଦ୍ୱିରୁକ୍ତ କରାଯାଇଅଛି । ଏଣୁ କବିତାର ଛନ୍ଦ ଅବାରିତ ଭାବେ ଗତି କରିଅଛି । କୌଣସି କୌଣସି ସ୍ଥାନରେ ଏହି ପ୍ରକ୍ରିୟାରେ ରଚିତ କବିତାର ଭାବ ଅତିମାତ୍ରାରେ ଚପଳ ତଥା ଚଞ୍ଚଳ ହୋଇ ଉଠିଛି । କୌଣସି ସ୍ଥାନରେ ମଧ୍ୟ ଏହା ଭାବକୁ ଆହୁରି ତୀକ୍ଷ୍ଣ

କରିବା ଫଳରେ ପାଠକ ଅନ୍ତଃରେ କାବ୍ୟ ପୁରୁଷର ସ୍ୱରମୂର୍ତ୍ତିକୁ ଚିହ୍ନିବାରେ କଷ୍ଟ ହୁଏନାହିଁ । କିନ୍ତୁ ଅନେକ ସ୍ଥଳରେ ଏହି ଉଦ୍ଦେଶ୍ୟକୁ ଅଧିକ ଫଳପ୍ରଦ କରିବା ପାଇଁ ଶବ୍ଦକୁ ଦ୍ୱିଧା ନ କରି ଗୋଟିଏ ଗୋଟିଏ ପଦକୁ ବାରମ୍ବାର ବ୍ୟବହାର କରାଯାଇଅଛି; କେତେବେଳେ ଏପରି ହୋଇଛି ଯେ ଗୋଟିଏ ପାଦରେ କୌଣସି ଗୋଟିଏ ଶବ୍ଦକୁ ବାରମ୍ବାର ବ୍ୟବହାର କରାଯାଇଅଛି । ପୁଣି ବା ପାଖାପାଖି ପଦମାନଙ୍କରେ ଏପରି କରାଯାଇଅଛି ।

ଯେଉଁଠି କବି ଗୋଟିଏ ଶବ୍ଦକୁ ନିଜର କୌଣସି ପାଦରେ ବାରମ୍ବାର ବ୍ୟବହାର କରିଛନ୍ତି । ସେଠାରେ ସେହି ପାଦଟିରେ ଅନେକ ବାକ୍ୟ ବା ଖଣ୍ଡ ବାକ୍ୟ ସୃଷ୍ଟି କରିବା ପାଇଁ ପଡ଼ିଛି । ଫଳରେ ତାହା ଶ୍ରୁତିକଟୁ ନହୋଇ ବରଂ ମନମୁଗ୍ଧକର ହୋଇଅଛି । ଯଥା

ଯଦ କେବଳ କୁହେ ଭୁଲ୍‌ସବୁ, ଗାଧ ତୁମେ
ବୋକା ତୁମେ, ଉଲୁ ତୁମେ
ବୁଝଣାର ଭେଳକି ତୁମର ( ଗୋବର ଗଣେଶ )

ଏହି ପ୍ରସଙ୍ଗରେ Eliotଙ୍କର ଶୈଳୀ ଆଖିରେ ପଡ଼େ ।

I keep my countenance .
I remain self-Possessed 'portrait of alady'

କିମ୍ବା

I shall wear white flannel trousers, and walk upon the beach .
I have heard the mermaids singing each to each .
I do not think that they will sing to me .
( The love song of J. Alfred Prufrock .)

ଗୁରୁପ୍ରସାଦ ମହାନ୍ତି ଉକ୍ତ ନ୍ୟାସ୍ଟରେ ଲେଖିଲେ :—

ଉମ୍ନ ବନେ ଗୁଡ଼ଥିଲ ସ୍କୁଲ କଲେଜ, ଦେଇଥିଲ ଗ୍ରନ୍ଥ ଉପ୍ରାଫ
ଉମ୍ନ ବନେ ସିଥିଲ ମିଲଗ୍ରୁଡ଼ ତେଲ୍ଡ ଓ ତେଜଥିଲ ସନ୍ଧ୍ୟାରେ
କାନ୍ତ ମା
ଉମ୍ନ ବନେ ଖୋଜୁଥିଲ ମୁକ୍ତି ପୁଣି ତେଜ ଆଉ ମନର ବସ୍ତୁ
ଉମ୍ନ ବନେ ଠିକ୍ଥିଲ ଭୂମଗର ଛାଁ କାଁ ସିଧା ଓ ସଳଖ
( 'କାଳପୁରୁଷ' )

କନ୍ୟା

ଯେଉଁଠି ଜୁଆର ଆସେ ପୋତବେଇ ମୁହାଣର ଘାସ ଖଗବନ
ଯେଉଁଠି ପାଣିରେ ଆସେ ଅକସ୍ମାତ ଫେଣବୁଡ଼ି ଓଲଟାଇ ମଗରର
ପିଠି
ଯେଉଁଠି ପବନ ଯାଏ ଖୋଜ ଖୋଜ ସାଗରାତ ଗୃହକଙ୍କ
ଘ ଝଡରେ
ଯେଉଁଠି ଧୂସର ସବୁ ବାଲ ଓ ଚଲର ରଙ୍ଗ କଙ୍କଡ଼ା ଓ
କୋକସିଆଳ ( ପ୍ରିକ୍ନିକ୍ )

ଅନ୍ୟ ସମୟରେ ଭାବର ଏକ ମୁଖ୍ୟଅଂଶକୁ ପାଦମାନଙ୍କରେ ବ୍ୟବହାର କରଯାଇଅଛି । ଗୁରୁପ୍ରସାଦ Neo-romantic ଧାରାକୁ ଓଡ଼ିଆ କବିତା ରାଜ୍ୟରେ ପ୍ରତିଷ୍ଠା କରିଛନ୍ତି । ଏଣୁ ଭାବର ଦ୍ରୁତଗତିଶୀଳତାକୁ ଆଖି ଆଗରେ ରଖି ସେ ତାଙ୍କର କାବ୍ୟ ସୌଷ୍ଠବକୁ ବଳିଷ୍ଠ କରିବା ନିମିତ୍ତ ଭାବର ପୁନରାବୃତ୍ତି ଦ୍ୱାରା ଅସ୍ଥିରତାର ବାତାବରଣ ସୃଷ୍ଟି କରନ୍ତି ଏବଂ ନିର୍ଦ୍ଦିଷ୍ଟ ଭାବଟିକୁ ବଳିଷ୍ଠ କରି ଥାନ୍ତି । ଏହି ଶୈଳୀଟି ମଧ୍ୟ T. S. Eliotଙ୍କର ବିଶେଷ କୌଶଳ । ଗୁରୁପ୍ରସାଦଙ୍କର ନିମ୍ନୋଦ୍ଧୃତ ପଂକ୍ତି ଗୁଡ଼ିକରୁ ତାହାର ସଂକେତ ମିଳେ ।

ଚଂପାଫୁଲ ମହକରେ ଏତେ ସେ ଯେ ଦାରୁଣ କୁହକ
ଉକ୍ରେଯାଏ ନଆଁ ଲାଗି; ଗୁଣ୍ଡି ଆଜି ନିଶ୍ୱାସରେ
ଗୁଣ୍ଡି ଆଜି ନିଶ୍ୱାସରେ ନିଆଁ ସେ ଯେ ଦେହେ ବିଜୁଳି ଚମକ
ବିଜୁଳି ଚମକ ସେ ଯେ ବଣନିଆଁ ସବୁଯାଏ ଛୁଇଁ ଭଲ ହୋଇ
('ଚମ୍ପାଫୁଲ')

ଉପରୋକ୍ତ ପଂକ୍ତିପୁଂଜକୁ ଛବାନୁପ୍ରାସ କୁହାଯାଇ ପାରେ । ଏହା ବ୍ୟତୀତ ଗୁରୁପ୍ରସାଦ ମହାନ୍ତି କୌଣସି କୌଣସି କବିତାରେ କୌଣସି ଏକ ଶବ୍ଦ ବା ଶବ୍ଦପୁଂଜକୁ ଅନେକ ଥର ପ୍ରୟୋଗ କରିଅଛନ୍ତି । ଉଦାହରଣ ସ୍ୱରୂପ, 'ଗୋବର ଗଣେଶ' କବିତାରେ ନଅଥର 'ପନ୍ଥଖଣ୍ଡିବା', 'କାଳପୁରୁଷ'ରେ ପାଞ୍ଚଥର 'ହେ ଉଦ୍ଧବ ସଖାମୋର ପ୍ରାଣର ସୋଦର', 'ପ୍ରିୟ ବାନ୍ଧବୀ' କବିତାରେ ଦୁଇଥର 'ଶୀତରତୁ ବୁଢ଼ା ହୋଇଯିବା', 'ଅଳକା ସାନ୍ୟାଲରେ' ତିନିଥର 'କାଜ ଓ ବାଦୁଡ଼'ର ବ୍ୟବହାର ହୋଇଅଛି । ନିଛାଟିଆ ଶବ୍ଦଟି କବିଙ୍କର ଅତି ପ୍ରିୟତମ ଶବ୍ଦ । ଅନ୍ୟାନ୍ୟ ଶବ୍ଦମାନଙ୍କ ମଧ୍ୟରେ 'ଜହ୍ନ', 'ତାରା', 'ଦେହ', 'ମନ', 'ସମୟ' ଇତ୍ୟାଦି ପ୍ରିୟତର ଅଟନ୍ତି ।

ଗୁରୁପ୍ରସାଦଙ୍କ କବିତା ପାଠକକୁ ଆବୋରି ରଖିବାର ଗୋଟିଏ ମୁଖ୍ୟ କାରଣ ଏହି ଯେ ସେ ପ୍ରାୟ ନିର୍ଭୁଲ୍ ଭାବେ ଛନ୍ଦ ସଂଯୋଜନା କରିଅଛନ୍ତି । କବିତାଗୁଡ଼ିକ ପୟାର ଛନ୍ଦରେ ରଚିତ । କେବଳ ସନେଟ୍ ତିନି ଏବଂ ଛଅଟିକୁ ଛାଡ଼ିଲେ ଅନ୍ୟାନ୍ୟ କବିତାମାନଙ୍କର ପାଦମାନଙ୍କର ଅକ୍ଷର ସଂଖ୍ୟା ସମାନ ନୁହେ । ପାଦଗୁଡ଼ିକ ପ୍ରାୟ ଯୋଡ଼ ସଂଖ୍ୟକ ଅକ୍ଷରକୁ ନେଇ ଗଠିତ । କ୍ୱଚିତ୍ ପାଦ ବିଯୋଡ଼ ସଂଖ୍ୟକ ଅକ୍ଷର ବିଶିଷ୍ଟ ।

ସଚ୍ଚିଦାନନ୍ଦ ରାଉତରାୟ 'ପାଣ୍ଡୁଲିପି'ର ଦାଙ୍ଗୀ ମୁଖରେ ପ୍ରକାଶ କରିଅଛନ୍ତି ଯେ 'ପାଣ୍ଡୁଲିପି'ର କେତେକ ପର୍ଯ୍ୟାୟର କବିତା ଗୁଡ଼ିକ ପୟାର ଜାତୀୟ ଛନ୍ଦରେ ରଚିତ । ତତ୍ପୂର୍ବରୁ ସେ ଏହି ଛନ୍ଦର ( ପୟାର ଛନ୍ଦ ) ସ୍ଥିତି ସ୍ଥାପକତା ସଂପର୍କରେ ନିଜର ବକ୍ତବ୍ୟ ପ୍ରକାଶ କରି କହିଛନ୍ତି ଯେ ସବୁପ୍ରକାର ଭାବକୁ ପାଖାପାଖି ରଖି ପରିବେଷଣ କରିବାରେ ପୟାରଛନ୍ଦ ପରି ଆଉ ଛନ୍ଦ ନାହିଁ । ପୟାର ଛନ୍ଦ ଚଉଦ ଅକ୍ଷର ବିଶିଷ୍ଟ ଦୁଇପାଦକୁ ନେଇ ଗଠିତ । କିନ୍ତୁ ପୟାର ଜାତୀୟ ଛନ୍ଦର ସ୍ୱରୂପ କ'ଣ ସେ ସଂପର୍କରେ କିଛି ହେଲେ ସୂଚନା ଦେଇ ନାହାନ୍ତି । ତାଙ୍କର କେତେକ ପର୍ଯ୍ୟାୟର କବିତାମାନଙ୍କର ଛନ୍ଦ ଯୋଜନାକୁ ଲକ୍ଷ୍ୟକଲେ ଜଣାଯାଏ ଯେ ଯେ ତାହାର ପାଦ ଗୁଡ଼ିକରେ ଚଉଦରୁ ଅଧିକ ବା କମ୍ ଅକ୍ଷର ମଧ୍ୟ ରହିଅଛି । ଚଉଦ ଅକ୍ଷର ବିଶିଷ୍ଟ ପାଦମାନଙ୍କର ବିଭାଜନ ଏହିପରି — ୪।୪।୬। ଯେଉଁଠି ଏହା ଅଠର କିମ୍ବା କୋଡ଼ିଏ ଅକ୍ଷର-ବିଶିଷ୍ଟ ହୋଇଅଛି ତାହାର ବିଭାଜନ ଯଥାକ୍ରମେ ୪।୪।୪।୪।୬ । ସଚ୍ଚିଦାନନ୍ଦ ରାଉତରାୟ ପାଦମାନଙ୍କର ଅକ୍ଷର ସଂଖ୍ୟା ମୁଖ୍ୟତଃ ଅଠର ଅକ୍ଷର ମଧ୍ୟରେ ସୀମିତ କରିଅଛନ୍ତି । ଯଥା :

ଲୌହସେତୁ । ମଂଥିବେଗେ । ଉଠାଇ ସେ । ଧୂଆଁର ନିଶାଣ
ଛୁଟିଗଲେ । ମାଲଗାଡ଼ି । ଶିବ୍ରଗତି । ଦୁଳଂତ କୃପାଣ

କେତେକ ସମାନ ସଂଖ୍ୟକ ଅକ୍ଷର ବିଶିଷ୍ଟ ଧାଡ଼ିପରେ ଛନ୍ଦର ମନୋଟୋନିକୁ ଭାଙ୍ଗିବା ପାଇଁ ସେ ମଝିରେ ମଝିରେ ପାଦର ଅକ୍ଷର ସଂଖ୍ୟା କମେଇ ଦେଇଅଛନ୍ତି । ପାଦମାନଙ୍କର ଅକ୍ଷର ସଂଖ୍ୟା ଦଶ କିମ୍ବା ଛଅ । ଗୁରୁପ୍ରସାଦ ତାଙ୍କର କବିତାଗୁଡ଼ିକୁ ପୟାର ଜାତୀୟ ଛନ୍ଦରେ ରଚନା କରିଥିଲେ ମଧ୍ୟ ରାଉତରାୟଙ୍କର ଛନ୍ଦ ଯୋଜନାଠାରୁ କେତେକ ବ୍ୟତିକ୍ରମ ତାଙ୍କର କବିତାମାନଙ୍କରେ ଦେଖାଯାଏ ।

ଗଜଟ୍ଟରସ୍ ସମାନ ସଂଖ୍ୟକ ( ପ୍ରାୟତଃ ପ୍ରାନ୍ତ ଅକ୍ଷରର ମେଳଥାଇ ) ଅକ୍ଷର ବିଶିଷ୍ଟ ପାଦମାନ ଯୋଗକରି ଦେଖିଛନ୍ତି ଯେ ଛନ୍ଦ ବହେ କ୍ଳାନ୍ତିକର ( ମନଟୋନସ୍ ) ହୋଇଯାଇଛି । ଏଣୁ ବାଧ୍ୟହୋଇ ମଝିରେ ମଝିରେ ପଦମାନଙ୍କର ଅକ୍ଷର ସଂଖ୍ୟା କମାଇ ଦେଇଅଛନ୍ତି । ଯଥା : —

ଦୂରେ ଚୋର । ପଥଗୃହେ । ଚମତ୍କାର । ଜଗତ୍ୟବ୍ୟାପାରେ ।<br>
ଅଯୋନି । ସଂଭୂତାପ୍ରିୟା । ଦେଖ ଦେଖ । ନକ୍ଷତ୍ର ମିନାରେ<br>
ଜଳୁଅଛି । ବଧିର ସ୍ୱାକ୍ଷର<br>
ଅଟେ ଘନ । ଚକ ଦ୍ୱେତ । ଫେଡିବାରେ । ପଥକାଣ୍ଡି ଚୋର୍

( ସ୍ୱମନାମ ସଚ୍ଚିଦାନନ୍ଦ )

ପ୍ରକାର ଏହି ଧାରା ଅବ୍ୟାହତ ରହିଅଛି । ଯେଉଁଠି କବି ପାଦମାନଙ୍କର ଅକ୍ଷର ସଂଖ୍ୟା ସମାନ ରଖିନାହାନ୍ତି ସେଠାରେ ମଧ୍ୟ ପାଦମାନଙ୍କର ପ୍ରାନ୍ତ ଅକ୍ଷରର ମିଳନ ପ୍ରତି ଗୁରୁତ୍ୱ ଦିଆଯାଇଅଛି । ଗୁରୁପ୍ରସାଦ ମହାନ୍ତିଙ୍କର ଦୁଇଟି ସିନେଟ୍‌କୁ ବାଦଦେଲେ ଅନ୍ୟ କବିତାମାନଙ୍କରେ ପାଦର ଅକ୍ଷର ସଂଖ୍ୟା-ମାନଙ୍କରେ ସ୍ଥିରତା ନାହିଁ । ଯେଉଁଠି ପାଖାପାଖି କେତୋଟି ପାଦର ଅକ୍ଷର ସଂଖ୍ୟା ସମାନ ହୋଇଅଛି ତାହା ଆକସ୍ମିକ । ଏଣୁ ମନଟୋନର ପ୍ରଶ୍ନ ଉଠେନାହିଁ । ସଚ୍ଚିଦାନନ୍ଦ ରାଉତରାୟ ଅନ୍ୟକେତେକ କବିତା ରଚନା କରିଅଛନ୍ତି ଯେଉଁ ଗୁଡ଼ିକର ପାଦ ସଂଖ୍ୟା ଆଦୌ ସ୍ଥିରନୁହେଁ । କିନ୍ତୁ ପାଦମାନଙ୍କର ଅନ୍ତ୍ୟକ୍ଷର ମେଳର ବିଶେଷ ଗୁରୁତ୍ୱ ରହିଛି ।

ମୋଟଉପରେ, ଗୁରୁପ୍ରସାଦ ମହାନ୍ତି ଛନ୍ଦ ଯୋଜନାରେ କେତେକ ବିଶେଷତ୍ୱ ରହିଛି ତାହାହେଲା ସେ ପ୍ରାନ୍ତ ଅକ୍ଷର ମେଳ ପ୍ରତି ଗୁରୁତ୍ୱ ଆରୋପ କରିନାହାନ୍ତି । ତାହା ହୁଏତ ଆକସ୍ମିକ

ଭାବେ ମିଳିଯାଉଛି । କବିତାର ପାଦମାନ ରାଧାନାଥଙ୍କ କବିତାର ପାଦମାନଙ୍କ ପରି କ୍ଷୁଦ୍ରବୃହେ । 'ଲୁଟିର ଖଗ' କବିତାରେ ଅଠରଅକ୍ଷର ଅକ୍ଷର ବିଶିଷ୍ଟ ପାଦର ବ୍ୟବହାର କରାଯାଇଅଛି । ସେହିପରି 'ସିତୁଆ'ରେ ଚଉଦଅକ୍ଷର ଅକ୍ଷର ବିଶିଷ୍ଟ ପାଦର ବ୍ୟବହାର କରାଯାଇଅଛି । ବାକ୍ୟଗଠନରେ ସେ ସରଳ ବାକ୍ୟ ଅପେକ୍ଷା ଯୌଗିକ କିମ୍ବା ଜଟିଳ ବାକ୍ୟଗୁଡ଼ିକୁ ବହୁପରିମାଣରେ ବ୍ୟବହାର କରିଅଛନ୍ତି ।

ଆଧୁନିକ କବିତାର ଭାଷା ଗଦ୍ୟଧର୍ମୀ ହୋଇଥିବାରୁ ଏବଂ ଏଥିରେ ପଦ୍ୟର ନିର୍ଦ୍ଦିଷ୍ଟ ନିୟମମାନ ଦେଖାଯାଉ ନ ଥିବାରୁ, ସର୍ବୋପରି ପଦ୍ୟ ସଂପର୍କରେ ଆମର ଏକ ନ୍ୟୂନଧାରଣା ଥିବାରୁ ଆମେ ହଠାତ୍ ଧାରଣା କରିବସୁ ଯେ ଆଧୁନିକ କବିତା ଛନ୍ଦହୀନ ତଥା ଲାଳିତ୍ୟହୀନ । ଏହି ଧାରଣାର ବଶବର୍ତ୍ତୀ ହୋଇ ଅନେକ କବି ହେବାର ଆଶା ପୋଷଣ କରିବସନ୍ତି । ଗୁରୁପ୍ରସାଦ ମହାନ୍ତିଙ୍କ ଛନ୍ଦର ନିୟମ, କବିତାରେ ଅନୁପ୍ରାସର ବହୁଳ ପ୍ରୟୋଗ (ଯାହା ଫଳରେ 'କ ପ୍ରାନ୍ତ ଅକ୍ଷରର ମିଳନକୁ ଗୌଣ ବୋଲି ପାଠକ ଧରିବାକୁ ବାଧ୍ୟ ହୁଏ) ସର୍ବୋପରି ଭାବ ତଥା ଶବ୍ଦର ପୁନରାବୃତ୍ତି ଇତ୍ୟାଦି ପ୍ରାଚ୍ୟ ପାଶ୍ଚାତ୍ୟ ଶୈଳୀର ଶିଳ୍ପ କଳାର ମିଶ୍ରଣଦ୍ୱାରା କବିତାର ଯେଉଁ ଅଭିନବ ରୂପଟିଏ ଫୁଟି ଉଠିଛି, ତାହାର ପ୍ରଭାବରେ ପାଠକ ନିଃଶ୍ଚୁପ ପରି ତଡ଼ି ହୋଇଯାଏ । ତାଙ୍କର କବିତାରେ ତଥା ପରିମାଣରେ ପ୍ରଚୁରତା ନ ଥିଲେ ମଧ୍ୟ ସେ ଓଡ଼ିଆ ସାହିତ୍ୟର ଜଣେ ବିଶିଷ୍ଟ ଶିଳ୍ପୀ ।



# ॥ ଗୁରୁପ୍ରସାଦଙ୍କ କବିତା ଓ ମୁଁ ॥

ମୋ ଭଳି ଯେଉଁମାନେ ଆଧୁନିକ ରୀତିରେ ପ୍ରଥମ କରି କବିତା ଲେଖା ଶିଖୁଥିଲେ, ସେମାନଙ୍କର ଦ୍ରୋଣଗୁରୁ ଥିଲେ ସଚି ରାଉତରାୟ। ସଚି ରାଉତରାୟଙ୍କୁ ଛାଡ଼ି ଦେଲେ ଆଉ ଜଣେ ଯିଏ ହଠାତ୍ ତରୁଣ କବିର ମନକୁ ଅଚ୍ଛନ୍ନ କରି ବସୁଥିଲେ, ସେ ଥିଲେ ଗୁରୁପ୍ରସାଦ ମହାନ୍ତି। ନୂଆ କରି କଲେଜ ପଢ଼ିଲା ବେଳେ (୧୯୬୪) ଗୁରୁପ୍ରସାଦଙ୍କ କବିତା ସହ ମୋର ପରିଚୟ। ସେତେବେଳେ 'ଓ୍ୱେଷ୍ଟଲ୍ୟାଣ୍ଡ' ପଢ଼ି ନ ଥିବା କବି ଆଧୁନିକ କବି ସମାଜରେ ଥିଲେ ଅପାଂକ୍ତେୟ। 'ଓ୍ୱେଷ୍ଟଲ୍ୟାଣ୍ଡ' ପଢ଼ିଦେଲେ କବିତ୍ୱର ପରୀକ୍ଷାରେ ପାସ୍ ହୋଇଯିବ, ଏ ଭରସା ନେଇ ପ୍ରଥମେ ପଢ଼ିଲି ଜ୍ଞାନନ୍ଦ ବର୍ମଙ୍କ 'ପୋଡ଼ାଭୂଇଁ'। କାରଣ ଏଲିଅଟଙ୍କ ଇଂରେଜୀ କବିତା ପଢ଼ି ବୁଝିବାର ଶକ୍ତି ନ ଥିଲା ମୋର। 'ପୋଡ଼ା ଭୂଇଁ'ରୁ କିଛିଟା ଆଭାସ ପାଇଲି, କିନ୍ତୁ ଅନୁପ୍ରାଣିତ ହେଲି ନାହିଁ। କାରଣ ମୋର କ୍ଷୁଦ୍ର କାବ୍ୟିକ ବିଶ୍ୱ ଭିତରେ 'ଓ୍ୱେଷ୍ଟଲ୍ୟାଣ୍ଡ୍'ର ବିସ୍ତୃତିକୁ ଧରି ରଖିବା ସହଜ ନଥିଲା। ମଫସଲର ନାଡ଼ୀ ନକ୍ଷତ୍ର ସହିତ ପରିଚିତ ଜଣେ ବାଳକ ପକ୍ଷରେ ଏ ଯେମିତି ଏକ ଅଭୂତପୂର୍ବ ଅନୁଭବ। 'ଓ୍ୱେଷ୍ଟଲ୍ୟାଣ୍ଡ୍'ର ଅନୁବାଦ ପଢ଼ି କଣ ମୁଁ ପାଇଲି ହୁଏତ କହି ପାରିବିନି। କିନ୍ତୁ ମନରେ ବଡ଼ ଅତୃପ୍ତି ରହିଗଲା।

ସେତେବେଳେ ଯେଉଁମାନଙ୍କର କବିତା ପତ୍ର ପତ୍ରିକା ପୃଷ୍ଠାରେ ଦେଖିବାକୁ ମିଳୁଥିଲା, ସେମାନଙ୍କ ଭିତରୁ ଅନ୍ୟତମ ଥିଲେ ଗୁରୁ-

ପ୍ରସାଦଙ୍କ ଗୀତିକାବ୍ୟିକତା ପ୍ରତି ଅନୁରକ୍ତ, କେତେକ ପୂର୍ବାପୁର ଭକ୍ତ। ତେଣୁ ଅନେକ କବିଙ୍କ କବିତାର ସାଧାରଣ ଆଲୋଚନା ବେଳେ ଗୁରୁ ପ୍ରସାଦଙ୍କ କାବ୍ୟମସ୍ତ ଅବୃତ୍ତିଧର୍ମୀ ଛନ୍ଦର ପ୍ରଭାବ କଥା ଶୁଣା ଯାଉଥିଲା। ସୌଭାଗ୍ୟକୁ ମୋ ହାତରେ ଦିନେ ପଡ଼ିଗଲା 'ନୂତନ କବିତା'। ଗୁରୁ ପ୍ରସାଦଙ୍କ କବିତାଗୁଡିକ ବାରଂବାର ପଢ଼ିଲି। ମୁଗ୍ଧ ହେଲି। ଗୋଟାଏ ଗଭୀର ଭାବାବେଶରେ ମୁଁ ପୁଣି ବୁଲିଲି ଏକ ଅନନୁଭୂତ ଜଗତରେ। କବିତାଗୁଡ଼ିକ ମୋର ପରିଚିତ ପରିବେଶ ଭିତର ଦେଇ କେତେବେଳେ କେଉଁ ଏକ ଅଜାଣତି ରାଜ୍ୟକୁ ମୋତେ ଟାଣି ନେଲା; ମୁଁ ଜାଣି ପାରିଲି ନାହିଁ। ଆଜି ବୁଝୁଛି, ସେ ଥିଲା ଗଭୀର କାବ୍ୟ ରସାନୁଭବ, କବି ସହ ଏକାତ୍ମବୋଧ। ମୁଁ କିଂତୁ ବୁଝି ପାରିଲି ନାହିଁ ଯେ ମୁଁ ପଢୁଛି ଏଲିଅଟ୍‌ଙ୍କ କବିତାର ଓଡ଼ିଶୀ ସଂସ୍କରଣ। ପରିବେଶ ତ ପୂର୍ବାପୁରି ଓଡ଼ିଆର, ଉପରକୁ ଉଠିଲେ ଭାରତର। ମନେ ହେଉଥିଲା ଯେମିତି କାବ୍ୟବସ୍ତୁ, ଚରିତ୍ର, ରୂପକଳ୍ପ, ପ୍ରତୀକ, କେଉଁଥିରେ ବିଦେଶୀ ଗଂଧ ନାହିଁ। ସଂପୂର୍ଣ୍ଣ ଏକ ଏକ ମୌଳିକ କବିତା। ସବୁଠାରୁ ମନକୁ ବେଶୀ ଛୁଉଁଥିଲା, କବିତାର ଛନ୍ଦ, ଯାହାଥିଲା ଓଡ଼ିଶୀ ଗଂଧରେ ଭରା। ସେଥିପାଇଁ ବୋଧହୁଏ କେତେକ ପ୍ରସିଦ୍ଧ କବିତାର ବହୁ ଲାଇନ ମନେ ରହି ଯାଉଥିଲା ଆପଣା ଛାଏଁ। ଆମର ପରିଚିତ ପରିବେଶର ରୂପ, ରସ, ଗଂଧ ଭିତର ଦେଇ ପାଶ୍ଚାତ୍ୟ ଜଗତର ନିଃସଂଗ ଅସହାୟତା, ଗ୍ଳାନିବୋଧ ନିକଟରେ ପହଂଚି ଯିବା ଏତେ ସହଜ ଅନୁଭବ କରି ପାରି ନ ଥିଲି କେବେ। ହୁଏତ ମୋ ପରି ଆଉ କେତେକ ନୂତନ କବି ଗୁରୁ ପ୍ରସାଦ ମହାନ୍ତିଙ୍କ କବିତା ମାଧ୍ୟମରେ ଏଲିଅଟ୍‌ଙ୍କ କାବ୍ୟ ଜଗତ ସହ ପରିଚିତ ହୋଇଥିବେ।

କମ୍ କବିତା ଲେଖି ବେଶି ପ୍ରତିଷ୍ଠାର ଅଧିକାରୀ ହୋଇଛଂତି କବି ଗୁରୁପ୍ରସାଦ। ତାଙ୍କର ପ୍ରତ୍ୟେକ କବିତା ଇନ୍ଦ୍ରଜାଲ ପରି ପାଠକ ମନକୁ ଗଭୀର ଭାବେ ଛୁଇଁ ପାରେ, ଆଲୋଡ଼ିତ କରି ପାରେ। ସେ କବିତା ଭିତରୁ କେତେକ ମନେ ହୁଅଂତି ଦେଶୀ, କେତେକ ପୁଣି ବିଦେଶୀ। ଅବଶ୍ୟ

ଉପାଦାନ ଦୃଷ୍ଟିରୁ । କିନ୍ତୁ ଉପସ୍ଥାପନ ଶୈଳୀ ସଂପୂର୍ଣ୍ଣ ସ୍ୱତନ୍ତ୍ର । ଏହି ସ୍ୱତନ୍ତ୍ର ଶୈଳୀ ହିଁ ତାଂକୁ କାବ୍ୟ ଜଗତରେ ପ୍ରତିଷ୍ଠିତ କରି ପାରିଛି । ପ୍ରତ୍ୟେକ ତରୁଣ କବିର ହୃଦୟକୁ ଅଧିକାର କରିବାର ସୁଯୋଗ ସୃଷ୍ଟି କରିଛି । ତାଙ୍କର ଶ୍ରେଷ୍ଠ କବିତା 'କାଳ ପୁରୁଷ' ବହୁ ସ୍ଥଳରେ ଏଲିଅଟ୍ ପ୍ରଭାବାନ୍ୱିତ ହେଲେ ବି ବାହ୍ୟତଃ ଏକ ମୌଳିକ କବିତାର ଗୌରବ ଲାଭ କରିପାରେ । ଏପର୍ଯ୍ୟନ୍ତ ପ୍ରତ୍ୟେକ କବି, ପାଠକ ମୁକ୍ତ କଂଠରେ ସ୍ୱୀକାର କରି ଆସିଛନ୍ତି ଯେ ଏଲିଅଟ୍‌ଙ୍କ କାବ୍ୟ ଭାବନାକୁ ସଂପୂର୍ଣ୍ଣ ନିଜସ୍ୱ କରିବାରେ ସଫଳକାମ ହୋଇ ପାରିଥିଲେ କେବଳ ଗୁରୁ ପ୍ରସାଦ ମହାନ୍ତି । କବିତା ଗୁଡ଼ିକରେ ମୌଳିକତାର ପ୍ରତିଫଳନ ଏତେ ବେଶି ଯେ ଆହରଣ କେଉଁଆଡ଼େ ଲୁଚି ରହିଯାଏ । ପାଠକ କବିତାର ରସ ସ୍ରୋତରେ ଭାସିଗଲାବେଳେ ଆହରଣର ସନ୍ଧା ପାଏ ନାହିଁ । 'ପ୍ରଜ୍ଞା'ର ସଂପାଦକ ଗୁରୁବାବୁଙ୍କ କବିତାକୁ ଖାଂଟି ଓଡ଼ିଆ କବିତା ବୋଲି ଘୋଷଣା କରିଥିଲେ । ଆଜି ପର୍ଯ୍ୟନ୍ତ ବି କେହି ଏହି ମତକୁ ଦୃଢ଼ତାର ସହିତ ଖଂଡନ କରି ପାରି ନାହାନ୍ତି । 'ଗୋବର ଗଣେଶ', 'ହରେକୃଷ୍ଣ ଧାଙ୍ଗ' ଆଦି ଏଲିଅଟ୍ ପ୍ରଭାବପୁଷ୍ଟ କବିତା ଚରିତ୍ର ଗୁଡ଼ିକର ଦେହରୁ ବିଦେଶୀ ଗଂଧ ପହଞ୍ଚରେ ବାରି ହୁଏ ନାହିଁ ।

ଆଧୁନିକ ଯୁଗରେ ରୋମାଣ୍ଟିକ୍ ପରଂପରାକୁ ଗ୍ରହଣ କରି ସଚେତନ ପ୍ରୟାସ କରି ଯାଉଥିଲେ ବି ତାହା ସବୁ ସମୟରେ ସଂଭବପର ହୋଇ ପାରୁନାହିଁ । କବିମାନଙ୍କ ଅଜାଣତରେ କାହୁ କବିତାର ଗଠନ ଶୈଳୀରେ ରୋମାଣ୍ଟିକ୍ ପ୍ରଭାବ ଆସନ ଜମାଇ ବସୁଛି । ସଚ୍ଚି ରାଉତରାୟଙ୍କ କେତେକ ବାସ୍ତବବାଦୀ କବିତାରେ ରୋମାଣ୍ଟିକ୍ ସ୍ୱର ପ୍ରଚ୍ଛନ୍ନ । ସେହିପରି ଗୁରୁବାବୁ ରୋମାଣ୍ଟିକ୍ ଶୈଳୀରେ ରିଅଲିଷ୍ଟିକ୍ କବିତା ଲେଖିବାର ସଚେତନ ପ୍ରୟାସ କରିଛନ୍ତି । ତାଙ୍କର କବିତା ଗୁଡ଼ିକ ବାହ୍ୟତଃ ଏକ ଏକ ରୋମାଣ୍ଟିକ୍ କବିତା ପରି ଜଣା ପଡୁଥିଲେ ମଧ୍ୟ ଜୀବନ ପ୍ରତି ଦୃଷ୍ଟିଭଂଗୀରେ ତୀବ୍ର ବ୍ୟଂଗଧର୍ମିତା ପରିଲକ୍ଷିତ । 'ଖାଣ୍ଟି ରୋମାଣ୍ଟିକ୍ ପରି ଜଣା

ପଢ଼ିଥିବା 'ଚଂପା ଫୁଲ', 'ଶିରି', 'ଶରତ ରାତିରେ ଜହ୍ନ', ଜଟପାତ ଧଟପୋଖରୀ' ଆଦି କେତେକ କବିତାରେ ଗୁରୁ ପ୍ରସାଦ ମହାନ୍ତିଙ୍କ ପ୍ରକୃତ କବି ସତ୍ତାକୁ ଦେଖିହୁଏ । ଏଇ କବିତା ଗୁଡ଼ିକ ମ ନହିଁ— ପୂର୍ବସୂରୀଙ୍କ ରୋମା-ଣ୍ଟିକ୍ କବିତାଠାରୁ ସଂପୂର୍ଣ୍ଣ ଭିନ୍ନ । ଏଗୁଡ଼ିକର ସ୍ୱତନ୍ତ୍ର ଗୌରଭ ତଥା ଚିତ୍ରଧର୍ମିତା ପାଠକକୁ ଏକ ନୂତନ ସୌନ୍ଦର୍ଯ୍ୟର ଜଗତ ସହିତ ପରିଚିତ କରାଏ । 'ପ୍ରିୟ ବାନ୍ଧବୀ', 'ଅଲକା ସାନ୍ୟାଲ', ପରି କବିତାର ବ୍ୟଙ୍ଗାତ୍ମକ ଦୃଷ୍ଟି ତଳେ ମଧ୍ୟ କବିର ଆନ୍ତରିକତା ପ୍ରକଟ । ଆଧୁନିକ କବିତାର ଏକ ପ୍ରଧାନ ଉପାଦାନ ବ୍ୟଂଗ ଗୁରୁ ବାବୁଙ୍କ ରୋମାଣ୍ଟିକ୍ କାବ୍ୟ ପ୍ରବାହ ତଳେ ତଳେ ଅନ୍ତଃସ୍ରୋତ ପରି ପାଠକ ଚିତ୍ତକୁ ଆକ୍ରାନ୍ତ କରି ବସେ । ତାଙ୍କୁ ନୂତନ ଦିଗ୍‌ଦର୍ଶନ ଦିଏ । ସେଇଥି ପାଇଁ ତ ସେ ନୂତନ କବିର ସଜଳ ଶ୍ରଦ୍ଧା ଆକର୍ଷଣ କରି ପାରିଛନ୍ତି ।

ଆଜି ସତୁରି ଦଶକର ଶେଷ ପର୍ଯ୍ୟାୟରେ ଆଧୁନିକ କବିତା କ୍ଷେତ୍ରରେ ବହୁ ନୂତନ ପରୀକ୍ଷା ଦେଖା ଦେଇଛି । ଫଳରେ କବିତା ପଦ୍ୟଧର୍ମିତା ଛାଡ଼ି କ୍ରମେ ନୀରସ ରୁକ୍ଷ ଗଦ୍ୟରେ ପରିଣତ ହେବାକୁ ବସିଲାଣି । ଗୁରୁପ୍ରସାଦ ମହାନ୍ତିଙ୍କ କବିତା ଏକସମୟରେ ପାଠକମାନଙ୍କୁ ଗଭୀରଭାବେ ଆକୃଷ୍ଟ କରିଥିଲା, ତାର ପଦ୍ୟଧର୍ମିତା ପାଇଁ । ଅନେକ ପାଠକ କବିତାର ସମସ୍ତ ପ୍ରତୀକ, ରୂପକଳ୍ପ ବା ପରିବେଶ ସୃଷ୍ଟିକୁ ବୁଝି ନ ପାରିଲେ ବି ସାବଲୀଳ ଭାଷା ଯୋଜନା ଓ ଛନ୍ଦୋମୟତାରେ ମୁଗ୍‌ଧ ହୋଇ ପଡ଼ୁଥିଲେ । ନୂତନ ଛନ୍ଦମୟ କବିତା ପ୍ରଥମେ ପାଠକକୁ ଏପରି ଆକୃଷ୍ଟ କରୁଥିଲା ଯେ ସେ ବାରଂବାର କବିତାକୁ ପଢ଼ିବାକୁ ଆଗ୍ରହୀହେଉଥିଲା । ଫଳରେ କବିତାର ଅର୍ଥ ତା ନିକଟରେ କ୍ରମଶଃ ସ୍ପଷ୍ଟ ହୋଇ ଉଠୁଥିଲା । ଅଂଧକାର ଭିତରେ କିଛି ସମୟ ଚାଲିଗଲେ ରାସ୍ତା ଟିକିଏ ପରିଷ୍କାର ଦିଶେ । କିନ୍ତୁ ଅଂଧକାରରେ ଚାଲିବାର ଅଭ୍ୟାସ ମୂଳରୁ ସୃଷ୍ଟି ନ ହେଲେ ପଥିକଠାରୁ ରାସ୍ତା ହେଇଯାଏ ଦୂରରେ । ଆଜିର କବିତା କ୍ଷେତ୍ରରେ ପାଠକମାନଙ୍କର ଅବସ୍ଥା ପ୍ରାୟତଃ ସେଇୟା । ସେମାନେ ଏହିପରି କବିତାର ଛିନ୍ନ ଅଙ୍ଗ ଦୁର୍ବୋଧ ରୁକ୍ଷ

ଗଦ୍ୟର ଧାଡ଼ିକୁ ନ ପଢ଼ି କିଂବା ପଢ଼ିବାର ଚେଷ୍ଟା କରି ବିରକ୍ତିରେ ଛାଡ଼ି ଦେଉଛନ୍ତି । କାରଣ କବିତାର ପ୍ରାଥମିକ ଆବେଦନ ସେମାନଙ୍କ ନିକଟରେ କିଛି ରହୁନାହିଁ । ଏଇ ଅବସ୍ଥାକୁ ଅବଶ୍ୟ ଆଜି ବହୁ କବି ହୃଦୟଂଗମ କଲେଣି । ଫଳରେ ବହୁ ଦିନ ଧରି ଛାଡ଼ି ଆସିଥିବା ମୁକ୍ତଛନ୍ଦ ଓ ଗଦ୍ୟଛନ୍ଦକୁ ସେମାନେ ଫେରାଇ ଆଣିଲେଣି । ଫେରାଇ ଆଣିଲେଣି ପୁଣି ଅଧିକ ସଫଳତାର ସହିତ । ସାଂପ୍ରତିକ କବିତାର ଛନ୍ଦ ଯୋଜନା ଦିଗରେ ସେମାନଙ୍କର ଏ ପ୍ରଚେଷ୍ଟା ଅଭିନନ୍ଦନୀୟ । ଏହିକ ବେଳେ ସେମାନେ ନିଶ୍ଚୟ ସ୍ମରଣ କରୁଥିବେ ଗୁରୁବାବୁଙ୍କ କବିତାର ମାଧୁର୍ଯ୍ୟକୁ । ବ୍ୟକ୍ତିଗତ ଭାବରେ ମୁଁ ମୋର କବିତାକୁ ଗଦ୍ୟରାଜ୍ୟରୁ ଫେରାଇ ଆଣି ନୂତନ ଛନ୍ଦରେ ସଚଳ କରାଇବାର ଚେଷ୍ଟା କରିଛି । ଏଇଟା ବୋଧହୁଏ ଗୁରୁବାବୁଙ୍କ କବିତାର ପରୋକ୍ଷ ପ୍ରଭାବ । ଅନ୍ୟ କେତେକଙ୍କଠାରେ ମଧ୍ୟ ଏ ପ୍ରଭାବ ମୁଁ ଅନୁଭବ କରୁଛି । ସହିତ ଗୁରୁବାବୁଙ୍କ ସମୟର କାବ୍ୟିକ ଉପାଦାନ ଆଜିର କବିତାରେ ପ୍ରାପ୍ୟ ଅଛି ।

କବି ଗୁରୁପ୍ରସାଦ ଝଂଡ଼ିଏ କବିତା ବହି ଲେଖି ଅଟକିଗଲେ ଅଧବାଟରେ । ଅଟକିଗଲେ ବୋଲି ସମସ୍ତେ ଦୁଃଖ ପ୍ରକାଶ କରନ୍ତି — ରସଜ୍ଞ ପାଠକଠାରୁ ଆରଂଭ କରି ସାଂପ୍ରତିକ କବି ପର୍ଯ୍ୟନ୍ତ । ଆଜି ଅନେକ କବି ଗୁରୁପ୍ରସାଦ ମହାନ୍ତିଙ୍କୁ ଅତିକ୍ରମ କରି ବହୁଦୂର ଆଗେଇଆସିଲେଣି ; ତଥାପି ଏଇ ବାଟୋଇଟିକୁ କେହି ଭୁଲି ନାହାନ୍ତି । ଭୁଲି ପାରୁ ନାହାନ୍ତି । କାରଣ ସେ ଯେତିକି ବାଟ ଚାଲିଥିଲେ, ସେଥିରେ ଥିଲା ଚାଲିବାର ପୂର୍ଣ୍ଣ ଗୌରବ । ତାଂକ ଚଲା ବାଟରେ ଅନୁଭବ କରିହୁଏ ମାଦକଭରା ଜ୍ୟୋତ୍ସ୍ନାର ସ୍ନିଗ୍ଧ ସୌନ୍ଦର୍ଯ୍ୟ, ତା ସହିତ ଚନ୍ଦ୍ରର କଳଙ୍କ । ଏକା-ବେଳକେ ଏ ଦୁଇଟିର ଅନୁଭବ ଚମତ୍କାର ନିଶ୍ଚୟ ।

—ନୀଳାଦ୍ରି ଭୂଷଣ ହରିଚନ୍ଦନ



ଗୁରୁପ୍ରସାଦଙ୍କ ପ୍ରଥମ କବିତା ବହି 'ନୂତନ କବିତା' ଯେତେବେଳେ ବାହାରିଥିଲା, ସେଇ ପାଖାପାଖି ସମୟରେ ମୋର ଜନ୍ମ। ଅନ୍ୟମାନଙ୍କ ପରି ଆଧୁନିକ କାଳର ଯେଉଁ କବିମାନଙ୍କ ସହ ଆମର ପାଠ୍ୟକ୍ରମ-ଭିତ୍ତିକ ପରିଚୟ ଥିଲା, ସେମାନଙ୍କ ମଧ୍ୟରୁ ମାନସିଂହଙ୍କ 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' ଓ 'ଗୋପ ପ୍ରୟାଣ' ଏବଂ ଗଡ଼ନାୟକଙ୍କ 'କୈଶୋରିକା' କାବ୍ୟଗ୍ରନ୍ଥ ଆଦିର ମୁଁ ଜଣେ ଅନୁରାଗୀ ପାଠକ ଥିଲି। ଏହା ମୋ ହାଇସ୍କୁଲ ପଢ଼ାବେଳର କଥା। ଆଧୁନିକ କବିତା ବୋଲି ଦଶମ ଶ୍ରେଣୀରୁ ମୁଁ ଯାହା ବୁଝୁଥିଲି ବା ଲେଖୁଥିଲି, ତାହା କୌଣସି ପୁରୁଣା କଲେଜ ମାଗ୍‌ଜିନ୍ ବା ରବିବାସରୀୟ ପ୍ରଜାତନ୍ତ୍ରର କିଛି ପଦ ଅମେଳଥିବା ବେଢ଼ଙ୍ଗି ଅ-ମିତ୍ରର କବିତା। ଯେଉଁଠି ଥିବ କିଛି ରୋମାଂଚ, କିଛି ସ୍ମୃତି ବା କିଛି ଉଚ୍ଚତର ଆଦର୍ଶ—ମୋଟାମୋଟି କବିତା କଳ୍ପନାର ଏକ ଗାଦ୍ୟକ ରୂପକଥା ହୋଇଥିବ! କବିତା ଲେଖୁଥିଲି ଲୁଚାଇ ଲୁଚାଇ। କଲେଜ ଛାତ୍ରାବାସର ମୁଖପତ୍ର 'ସାଗରିକା'ରେ ମୋର ପ୍ରଥମ ପ୍ରକାଶିତ କବିତା 'ସ୍ୱପ୍ନ' (୧୯୭୩), ଆଉ ୩।୦ଟି କବିତା ସେଇଥିରେ ବାହାରିଥିଲା ଅନ୍ୟବନ୍ଧୁଙ୍କ ନାଁରେ। ସେତେବେଳକୁ ମୋର ପ୍ରୟୋଗବାଦୀ କାବ୍ୟଧାରାର କୌଣସି କବି ବା କବିତା ପୁସ୍ତକ ସହ ପରିଚୟ ନ ଥିଲା ପତ୍ରପତ୍ରିକା ବ୍ୟତୀତ। ତା'ଛଡ଼ା ଇଣ୍ଟରମିଡିଏଟ୍ ବିଜ୍ଞାନର ଛାତ୍ର ହିସାବରେ କବିତା ଲେଖା ପାଇଁ ସମୟ ବା କାହିଁ? ହଁ! ସେଇ ତେସ୍ତରି ମସିହା ହେବ, ଏକ ଉପର ଶ୍ରେଣୀ ବନ୍ଧୁଙ୍କଠୁଁ ମାଗି ଆଣିଥିବା କବିତା ବହିଟି ଥିଲା 'ସମୁଦ୍ର ସ୍ନାନ'।

'ସମୁଦ୍ର ସ୍ନାନ'ରୁ ଗୁରୁପ୍ରସାଦଙ୍କ ସହ ପ୍ରଥମ ପରିଚୟ। ଗୁରୁପ୍ରସାଦ ନାମଧାରୀ ମଣିଷଟିକୁ ଏ ଯାଏ ବି ଦେଖିନି। ତେବେ

ସେ ସମୟର ମନ ପତ୍ରିକା ପୃଷ୍ଠାରେ ଗୁରୁପ୍ରସାଦଙ୍କ ନାଁ ତ ମିଳୁ ନଥିଲା । ପରେ ଜାଣିଲି ସେ ଆଜ୍ ଲେଖାଲେଖି କରୁନାହାଁନ୍ତି । ହଁ ! ସେଇ ପାଖାପାଖି ସମୟରେ ଗୁରୁପ୍ରସାଦ ବୋଧେ 'ସମୁଦ୍ର ସ୍ନାନ' ଲାଗି କେନ୍ଦ୍ର ଏକାଡେମୀ ସାହିତ୍ୟ ପୁରସ୍କାର ପାଇଲେ । ମୋପାଇଁ ତାହା ଥିଲା ନିଶ୍ଚିତ ଭାବେ ଏକ କୌତୁକପ୍ରଦ ବିହ୍ୱଳ ଘଟଣା ଏବଂ ଅଭିଜ୍ଞତା । ସେ ସମୟରେ 'ଚମ୍ପା ଫୁଲ', 'କାଳ ପୁରୁଷ', 'ଅନ୍ତଃପୁର-ଉବାଚ' ଆଦି କବିତା ବର୍ତ୍ତମାନ ପଢ଼ିକା ମୋତେ ଖୁବ ଛୁଇଁଥିଲା । ମୋ ସାଙ୍ଗରେ ନୂଆ ନୂଆ କବିତା ଓ ଗଳ୍ପ ଲେଖୁଥିବା ଓ ଚର୍ଚ୍ଚା କରୁଥିବା ବନ୍ଧୁମାନଙ୍କ ମେଳରେ ମୁଁ 'ସମୁଦ୍ର ସ୍ନାନ'ର ପ୍ରାୟ ସବୁ କବିତା ଆବୃତ୍ତି କରୁଥିଲି ଏବଂ କେବେ କେବେ ଏକା ଏକା ପ୍ରକୋଷ୍ଠ ଦରଜା ବନ୍ଦ କରି ମଧ୍ୟ । ସେବେ ଯେଉଁ କେଉଁଥାରୁ ମୋତେ ବେଶୀ ବିହ୍ୱଳ କରିଥିଲା ତାହା ସେଇ 'ନଭ ଅଶ୍ରୁର ଦେହ ଉଦ୍ଭବ, ପରିଚ୍ଛେଦଟି । କହିବା ବାହୁଲ୍ୟ, ଅନର୍ଷ ଶେଷ ବର୍ଷ ସୁଦ୍ଧା ପ୍ରୟୋଗବାଦୀ ଧାରାର କବିତାଗୁଡ଼ିକ ସହ ମୋର ଏକ ପ୍ରାଥମିକ ପରିଚୟ ସ୍ଥାପିତ ହୋଇ ସାରିଲାଣି ।

କବିତା ଲେଖା ହେଉଥାଏ । କିନ୍ତୁ କବିତାର ଥିଓରି ସମ୍ପର୍କରେ ସେବେ ବି ଜାଣିବାର ସୁଯୋଗ ନ ଥିଲା ଏତେ ବେଶୀ । ତଥାପି ପତ୍ର ପତ୍ରିକାକୁ ମୁଁ କବିତା ପଠାଉଥିଲି । ବାହାରୁଥିଲା ବି କିଛି କିଛି । ତେବେ ପ୍ରାରମ୍ଭରୁ ଏକ କୈଶୋରସୁଲଭ ଚପଳ ମନସ୍ଥିତି ମୋତେ ତାଙ୍କ କବିତାର ପ୍ରେମରେ ପକାଇ ଥିଲା । ନ ହେଲେ ମୁଁ କେମିତି ଲେଖିଥାନ୍ତି—"କିନ୍ତୁ 'ସମୁଦ୍ର ସ୍ନାନ'ର ନାୟକ ପରି/'ଆଖିର କପୋତ ମୋର'/କାଟେ ଆଜ ତୋ ଲାଗି ଲୁହର

ଫସଲ,/କିନ୍ତୁ ପାଇଁ ମୋ କ୍ଷେତ ମାଟି ଋଣଗ୍ରସ୍ତ ଅନେକ ଧୂସର ।"
(ଅଗ୍ନିଚକ୍ଷୁ ପାଇଁ ଗୋଟିଏ କବିତା'—ସ୍ୱର୍ଣ୍ଣ କରଣ : ଫେବୃୟାରୀ ୧୯୭୫ ) ।

କେତେ ବାର "ଦି ୱେଷ୍ଟ ଲ୍ୟାଣ୍ଡ୍"କୁ 'କାଳ ପୁରୁଷ' ମଧ୍ୟ ମିଳାଇ ପଢ଼ିଛି । ମନେ ମନେ ଗୁରୁପ୍ରସାଦଙ୍କ ଶକ୍ତି କଳନା କରିଛି । ଏ ଭିତରେ ଅନ୍ୟ କବିଙ୍କୁ ବି ଅଧ୍ୟୟନ କରିଛି ଜଣେ ଚିନ୍ତାର ଏବଂ ପରସ୍ପରଙ୍କ କାବ୍ୟ—କୃତି ଭିତରେ ସୂକ୍ଷ୍ମ ବ୍ୟବଧାନକୁ ଲକ୍ଷ୍ୟ କରିଛି ।

ଗୁରୁପ୍ରସାଦଙ୍କ କ୍ଲାସରୁମ୍ ସମାଲୋଚକ ହେଲା ପରେ, ସ୍ନାତକୋତ୍ତର ଶ୍ରେଣୀରେ ଓଡ଼ିଆ ସାହିତ୍ୟ ଅଧ୍ୟୟନ ସମୟରେ । ଓଡ଼ିଆ କବିତାର ଧାରା ଓ ନିଜ କବିତା ଲେଖା ପ୍ରତି ସଚେତନ ହେଲା ପରେ ପ୍ରୟୋଗବାଦୀ ପରମ୍ପରାର ଜଣେ ସାମାନ୍ୟତମ ସାଧକ ସ୍ୱଭାବରେ ଗୁରୁପ୍ରସାଦଙ୍କର କୌଣସି ସ୍ପନ୍ଦନ ମୋ ଭିତରେ ଅନୁଭବ କରି ନାହିଁ । ଅଚେତନ ପ୍ରଭାବ କଥା ମୁଁ କହି ପାରୁନି । ଆଲୋଚନା ପ୍ରସଙ୍ଗରେ ଗୁରୁପ୍ରସାଦଙ୍କ କବିତାରୁ ଉଦାହରଣ ଦେଇଛି ଅନେକଥର, ଅବସରରେ ତାଙ୍କ କବିତାକୁ ଆବୃତ୍ତି କରିଛି କେତେ ଥର । ପତ୍ର ପତ୍ରିକାରେ ତାଙ୍କ ଉପରେ ନିନ୍ଦା ପ୍ରଶଂସା ମିଶ୍ରିତ, ଗୋଷ୍ଠୀମୁକ୍ତ ଓ ଗୋଷ୍ଠୀଯୁକ୍ତ ଆଲୋଚନା ପଢ଼ିବାଠୁଁ ଆରମ୍ଭ କରି ଟେକ୍ନିକାଲ ପେପର ପାଇଁ ତାଙ୍କ କବିତାକୁ ବାରମ୍ବାର ଅଧ୍ୟୟନ କରିବାକୁ ପଡ଼ିଛି । ମୋର ସବୁଥର ମନେ ହୋଇଛି ଯେ ପ୍ରେମରେ ଯେଉଁ ଅକଥନୀୟ କଥା ତାଙ୍କ କବିତାରେ ସ୍ପନ୍ଦିତ, ତାହା ବିଶେଷ କରି ବିଶ୍ୱଯୁଦ୍ଧ ପରବର୍ତ୍ତୀ ପ୍ରାଣ ସ୍ପନ୍ଦନରୁ ଉଦ୍‌ଭୂତ । ବସ୍ତୁଗତ ( ମ୍ୟାଟେରିଆଲିଷ୍ଟିକ୍ ) ହତାଶା ବୋଧ ଯାହା ବିଶେଷ

କର ଅର୍ଥନୈତିକ ଦୁରବସ୍ଥା ଓ ସାଂସ୍କୃତିକ ସଙ୍କଟ ଯୋଗୁଁ ଆମ ପ୍ରଦେଶରେ ଚରି ଯାଇଛି, ତାକୁ ଯଦି ବାଦ ଦିଆଯାଏ, କେତୋଟି କଥା ବା ଭାବ ଐଶ୍ୱର୍ଯ୍ୟ ବ୍ୟକ୍ତିଗତ ସାଂସ୍କୃତିକ ଏବଂ ଐତିହ୍ୟଗତ ଭାବସ୍ପନ୍ଦନ ଦୃଷ୍ଟିରୁ ଗୁରୁପ୍ରସାଦ ଅନେକାଂଶରେ ବିଦେଶୀ ବିଦେଶୀ ଲାଗିବେ । ତାଙ୍କ ଦେହ ଚେତନା ପ୍ରାୟ ସର୍ବସ୍ୱ ଏକ ଯୌନ ଅବବୋଧରେ ବସ୍ତୁତଃ ସୀମାୟିତ । କାବ୍ୟ ପୁରୁଷ ବାରମ୍ବାର ସ୍ମରୁଛି ଦେହର ବିକାର, ମନର ବିକାର କଥା । ମୋ ମନରେ ସ୍ୱତଃ ପ୍ରଶ୍ନ ଉଠୁଛି ଅନେକ ଥର, ତାଙ୍କର ବୈରାଗ୍ୟ ଓ ଅବକ୍ଷୟ-ଜନିତ ହାହାକାର ପ୍ରକୃତରେ କାହିଁକି ଏତେ ବେଶୀ ? ଏଥିଲାଗି ବୋଧେ ତାଙ୍କ କବିତାରେ ନାରୀ ଭିତରେ କୌଣସି ସୌନ୍ଦର୍ଯ୍ୟ ଚେତନାକୁ ଆବିଷ୍କାର କରିବାର ପିପାସା କ୍ଷୀଣ ହୋଇ ଯାଇଛି ଏବଂ ଜୀବନର ଅନ୍ୟ ସବୁ ଦିଗ ଅବହେଳିତ ହୋଇ ପଡ଼ିଛି ।

ମାନିବାକୁ ହେବ ଯେ, ଗୁରୁପ୍ରସାଦଙ୍କ ଶୈଳୀ ଏତେ ଚମତ୍କାର ଯେ ସମସାମୟିକମାନଙ୍କ ଭିତରେ ସେ ଏକ ନିଶ୍ଚିତ ବ୍ୟତିକ୍ରମ, ସଂଗୀତର ଏକ ମୃଦୁ ଲହରି ନିଶ୍ୱାସର ପତନ ପର୍ଯ୍ୟନ୍ତ ଲମ୍ବିଯାଏ । ବେଶି ବୋଧ, ଶବ୍ଦ ପ୍ରାଚୁର୍ଯ୍ୟ କାହିଁ ? ସେଇ ଅଳ୍ପ ଶବ୍ଦକୁ ମାପିଚୁପି ପ୍ରୟୋଗ କରିବାରେ ବିଶେଷତଃ ପ୍ରେମ-କବିତା ଲେଖିବାରେ ସେ ଏକ ଅଲଭିତ ଦକ୍ଷ ଶିଳ୍ପୀ । ଏବର ଜଣେ ଅଧେ କବିଙ୍କ ପରି ଯା'ଚ୍ଛାତା ଶବ୍ଦ ସଂଯୋଜନାରେ ଦେହ ଉତ୍ତାପକୁ ପୁନଃ ପୁନଃ ପ୍ରକାଶ କରି ଦୀର୍ଘ ପ୍ରେମ କବିତା ନାଁରେ ପାଠକଙ୍କୁ କଣ୍ଟି ଗୁଲକ ଦେଖାଇବା ବା ଅଯଥା କ୍ଲାନ୍ତ କରି ଦେବା ଭଳି କବି ସେ ନ ଥିଲେ । ତାଙ୍କ କବିତାରେ ଯୌନ ବିକୃତି ନାହିଁ, ବିକାର ସଂପର୍କରେ କୁହାଯାଇଛି । ମୁଁ ବି ପୂର୍ବରୁ

ଏ କଥା କହୁଛୁ । କେବେ କେବେ ବନ୍ଧୁ ମହଲରେ ଆଲୋଚନା କରିଛୁ ଯେ ପାଶ୍ଚାତ୍ୟ ସାହିତ୍ୟରୁ ଆହରଣ କରି ନିଜ ସାହିତ୍ୟରେ ସମୀକରଣ କରିବାର ଅନ୍ୟତମ ବଳିଷ୍ଠ ପ୍ରତିଭା 'କାଳପୁରୁଷ'ର କବି ଗୁରୁପ୍ରସାଦ । ଏଇଠି ମୁଁ ଅନେକ ସମାଲୋଚକ ବା କବିଙ୍କ ପରି 'କାଳପୁରୁଷ'କୁ 'ଓ୍ୱେଷ୍ଟଲ୍ୟାଣ୍ଡ'ର ଏକ ନକଲି ସଂସ୍କରଣ ବୋଲି କହୁନାହିଁ । ବରଂ ଏତିକି କହିବି ଯେ ଆହରଣ ଏବଂ ସମୀକରଣ କଳାଶିଳ୍ପ ଦୃଷ୍ଟିରୁ ଏହା ସ୍ୱାଧୀନୋତ୍ତର ଓଡ଼ିଆ କବିତାରେ ଏକ ସଫଳ ଉଦାହରଣରୂପେ ସ୍ୱୀକୃତ ହେବ ।

ଉତ୍ତର ପର୍ଯ୍ୟାୟରେ ନୂଆସ୍ୱାଦ ଓ ଶିଳ୍ପ ପ୍ରକରଣ ଦୃଷ୍ଟିରୁ ଏକ ଅବିସଂବାଦିତ ପ୍ରତିଭା ଗୁରୁପ୍ରସାଦ । ତାଙ୍କ ସମସାମୟିକ ଅନ୍ୟତମ ସଚେତନ କବି ବୈଶ୍ୱଧର ରାଉତ । ଭିନ୍ନ ଇଲାକା ଓ ଆଲୋକର କବି ସେ । ତେବେ ସବୁଜ ପୂର୍ବରୁ ପ୍ରତିଷ୍ଠା ଲାଭ କରିଥିବା ରମାକାନ୍ତ, ସୀତାକାନ୍ତ, ଦୀପକ ପ୍ରଭୃତି ବା ସବୁଜ ପରେ ପ୍ରତିଷ୍ଠିତ ସୌଭାଗ୍ୟ ପ୍ରମୁଖଙ୍କ କଥା ଛାଡ଼ି ବିଚାରକୁ ନେଲେ ସୀତାକାନ୍ତ, ସୌଭାଗ୍ୟ ଓ ଅନ୍ୟ ବହୁ କବିଙ୍କ ପ୍ରାଥମିକ କବିତା ଗୁଡ଼ିକରେ ଗୁରୁପ୍ରସାଦଙ୍କ ପ୍ରଭାବ ପରିଲକ୍ଷିତ ହେବ ଉଭୟ ଭାବଚେତନା ଓ ଶିଳ୍ପ ପ୍ରକରଣ ଦୃଷ୍ଟିରୁ । ନାମୋଲ୍ଲେଖ କରାଯାଇଥିବା ଅନୁଜ ମାନେ ତାଙ୍କୁ ସଂପ୍ରତି ଅତିକ୍ରମ କରିଗଲେଣି ବୋଲି କହିବାରେ ମୋର ଦ୍ୱିଧା ନାହିଁ । ଆହୁରି ମଧ୍ୟ ମୁଁ ଲକ୍ଷ୍ୟ କରିଛି ତାଙ୍କ କବିତା ଯେଉଁ ମାତ୍ରାରେ ପାଠକଙ୍କୁ ଆବେଗରେ ଜାବୁଡ଼ି ଧରି ରଖିପାରେ, ସେଇ ମାତ୍ରାରେ ମୁଁ ତାକୁ ସଂକ୍ରମିତ ହୋଇପାରେ ନାହିଁ । ଅନ୍ୟ କୌତୁକପ୍ରଦ କଥାଟି ହେଉଛି, ଆବେଗକୁ ମୁଖ୍ୟ ଉପଜୀବ୍ୟ କରି ପ୍ରେମ କବିତା ଲେଖୁଥିବା ତରୁଣମାନେ ଏବେ ବି ପ୍ରଥମେ ତାଙ୍କ କବିତା ପ୍ରେମରେ ପଡ଼ନ୍ତି—ଏ ବର୍ଷର ଅଧ୍ୟୟନ ଓ ବ୍ୟକ୍ତିଗତ ଅଭିଜ୍ଞତାରୁ କହୁଛି । ଏ କଥା ସତ ଯେ ସେ ତାଲିକାରେ କିଛି ଦିନ ବୁଲାଚଲା କରି ଏମାନେ ଅଲଗା ବାଟ ବାଛନ୍ତି ।

ଆଧୁନିକ କାଳରେ ସବୁଠୁଁ କମ୍ କବିତା ଲେଖି ରାଉତରାୟ ପରଂପରାରେ ବିଦା କରିଥିବା କବିଙ୍କ ତାଲିକାରେ ତାଙ୍କ ନାମ ପ୍ରଥମରେ ରହିବ । ବରଂ ସେ ସ୍ୱଚ୍ଛମତ କବିତା ଲେଖାରେ ମନୋନିବେଶ କରିଥିଲେ

ତାଙ୍କ ପରବର୍ତ୍ତୀ ସୃଷ୍ଟିଶୀଳତାର ରୂପ କିପରି ହୋଇଥାଂତା ତା' କଳ୍ପନା କଷ୍ଟକର । ତାଙ୍କର ସେଇ କାବ୍ୟଗ୍ରଂଥ 'ସମୁଦ୍ରସ୍ନାନ' ମୋ ର୍ୟାକରେ ଏବେ ମର୍କିତ ହୋଇ ରହିଛି ପ୍ରଥମ କିଶୋରୀର ପ୍ରେମ ପତ୍ର ପରି । ତାଙ୍କର ବିକାଶ ଓ ଉତ୍ତରଣ କଥା ଆଉ ହୁଏ ନାହିଁ । ଏବେ ଓଡ଼ିଆ କବିତାର ସମୁଦ୍ର କୂଳରେ ସ୍ନାନ କରିବାକୁ ଅନେକଙ୍କ ଭିଡ଼, ଅନେକଙ୍କର ଲମ୍ଫଝମ୍ପ ଲାଂଗିବା । ସେଇଆଡ଼େ ମୁଁ ମୋ କାନ ପାରିଛି ।



— ଶତ୍ରୁଘ୍ନ ପାଣ୍ଡବ

ଶୁଣାଯାଏ, ବସ୍‌ୱେଲ, ଡଃ ଜନ୍‌ସନଙ୍କ ସଂପର୍କରେ ଜାଣିବାପାଇଁ ବହୁ ବାଧାର ସମ୍ମୁଖୀନ ହୋଇଥିଲେ । ସବୁଠୁ ମଜାର କଥା—ଡଃ ଜନ୍‌ସନ୍ ନିଜେ ହିଁ ଥିଲେ ଏହାର ମୁଖ୍ୟ ହେତୁ । ତଥାପି ବସ୍‌ୱେଲ, ଜନ୍‌ସନ୍‌ଙ୍କ ସାକ୍ଷାତ କରିବାର ମୋହ ଏଡ଼ାଇ ପାରି ନ ଥିଲେ । ଏହା ଅଷ୍ଟାଦଶ ଶତାବ୍ଦୀର ଘଟଣାବିଶେଷ ହୋଇପାରେ; କିଂତୁ ଆବେଗସ୍ପୃଷ୍ଟ କବି ଲେଖକଙ୍କ ସାନ୍ନିଧ୍ୟ ସବୁବେଳେ ଆକର୍ଷଣୀୟ ହୋଇ ରହି ଆସିଛି । ସେହିପରି ଏକ ଆବେଗର ମୋହରେ ମୁଁ ପୁରୀ କଲେଜକୁ ପଢ଼ିବାକୁ ଗଲି । ଏହା ୧୯୬୮ ମସିହାର କଥା ।

ଗୁରୁବାବୁଙ୍କ ପରି ପ୍ରତିଭାଧର କବିଙ୍କ ନିକଟରେ ପାଇବା, ତାଙ୍କର ସ୍ୱର ଓ ତାଙ୍କର ଅନୁଭବ ସହିତ ଏକାତ୍ମ ହେବାର ମୋହ, ଯେ କୌଣସି ତରୁଣ କବି ନିକଟରେ ରହିବା ସ୍ୱାଭାବିକ । ସେତେବେଳକୁ ସଚି ରାଉତରାୟଙ୍କ 'ପଲ୍ଲୀଶ୍ରୀ' (୧୯୪୦), 'ବାଜିରାଉତ' (୧୯୩୯-୪୨), 'ପାଣ୍ଡୁଲିପି' (୧୯୪୭) ଓ 'ସ୍ୱାନୁମତୀର ଦେଶ' (୧୯୪୧ ) ଆଦି କବିତା ପୁସ୍ତକ ମାଧ୍ୟମରେ ମୋର ଅନ୍ତତଃ ଆଧୁନିକ କବିତା ସହିତ କିଞ୍ଚିତ୍ ପରିଚୟ ହୋଇସାରିଥିଲା । ଗୁରୁବାବୁଙ୍କର ୧୯୫୫ରେ ପ୍ରକାଶିତ 'ନୂତନ କବିତା' ମଧ୍ୟ ପଢ଼ି ସାରିଥିଲି

ଏବଂ ବିଭିନ୍ନ ସମୟରେ 'ଝଙ୍କାର'ରେ ପ୍ରକାଶିତ ତାଙ୍କର କବିତାକୁ ମଧ୍ୟ ବହୁବାର ପଢ଼ିଥିବାର ମୋର ସ୍ପଷ୍ଟ ମନେ ଅଛି । ବିଷୁବସଂଖ୍ୟା 'ଝଙ୍କାର'ରେ ଗୁରୁବାବୁଙ୍କ କବିତା ସହିତ ପ୍ରକାଶିତ ଗ୍ରୁପ ଫଟୋ ମାଧ୍ୟମରେ ତାଙ୍କ ସଂପର୍କରେ ମୋର କେମିତି ଏକ ରହସ୍ୟପୂର୍ଣ୍ଣ ଆବେଗମୟ ଧାରଣା ସୃଷ୍ଟି ହୋଇଥିଲା ।

୧୯୫୮ରୁ ୬୦, ଦୁଇବର୍ଷ କାଳ ମୁଁ ତାଙ୍କୁ ଦୂରରୁ ହିଁ ଦେଖିଛି । ସେତେବେଳକୁ ପ୍ରକାଶିତ ତାଙ୍କର 'ଦୃଷ୍ଟିର ଜଗତ୍', 'ହରେକୃଷ୍ଣ ଦାସ (ଦୁଇ)' ଓ ଅନ୍ୟ କେତେକ କବିତା ପଢ଼ିଛି । ୧୯୬୦ରେ ('ପ୍ରଜ୍ଞା'-୨) 'କାଳପୁରୁଷ' ପ୍ରକାଶିତ ହେଲା । ସେ କବିତା ପଢ଼ିଲାପରେ, ଆଉ କବିତା ଲେଖିବା ଉଚିତ ନୁହେଁ ବୋଲି ମୋର ଧାରଣା ହେଲା ଏବଂ କେତେଦିନ ପର୍ଯ୍ୟନ୍ତ ମୋର କବିତା ଲେଖିବା ମଧ୍ୟ ବନ୍ଦ ହୋଇଯାଇଥିଲା ।

ଏ ଭୂମିକାର ତାତ୍ପର୍ଯ୍ୟ ହେଲା—ଗୁରୁବାବୁଙ୍କ କବିତା କେବଳ ମୋତେ ନୁହେଁ, ସେ ସମୟର ଅନେକଙ୍କୁ ଆବୋରି ରଖିଥିଲା । ମାତ୍ର ୨୯ଟି କବିତା ଲେଖି ଏତେ ପ୍ରଭାବଶାଳୀ କବି ଭାବରେ ଓଡ଼ିଆରେ ସେ ହିଁ ପ୍ରଥମ ।

ଊନବିଂଶ ଶତାବ୍ଦୀର ଶେଷ ଦଶକରେ ଅର୍ଥାତ୍ ପ୍ରାୟ ୯୦ ବର୍ଷ ତଳେ ରାଧାନାଥ ଓଡ଼ିଆ କବିତାକୁ ଭଂଜୀୟ ପ୍ରଭାବରୁ ମୁକ୍ତ କରି ନୂତନ ଦୃଷ୍ଟିଭଂଗୀର ପରିଚୟ ଦେଲେ । ଫଳରେ ଦୀର୍ଘଦିନ ଧରି ରାଧାନାଥଂକ କାବ୍ୟ-ପ୍ରଣାଳୀ ଓଡ଼ିଆ କବିତାକୁ ପ୍ରଭାବିତ କରି ରଖିଥିଲା । ଓଡ଼ିଶାର ଜନ ଜୀବନରେ ବହୁ ପରିବର୍ତ୍ତନ ସହିତ ବିଶ୍ୱସାହିତ୍ୟର ଦ୍ରୁତ ପରିବର୍ତ୍ତନ ସଂପର୍କରେ ଓଡ଼ିଆ କବିମାନେ ସଚେତନ ଥିଲେ ହେଁ, ରାଧାନାଥଂକ ପ୍ରଭାବକୁ ଏଡ଼ାଇ ଏହାର ପ୍ରକୃତିକୁ ବୁଝିପାରିଲେ ନାହିଁ । ରାଧାନାଥ-ପରଂପରା ଯେ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ମଧ୍ୟ ଅଚଳ, ଏହା ଓଡ଼ିଆ କବିତାରେ ଲକ୍ଷ୍ୟ କରାଯାଇପାରିଲା ନାହିଁ ।

ପରିବର୍ତ୍ତିତ ପରିସ୍ଥିତିରେ ନିର୍ଦ୍ଦିଷ୍ଟ ଓ ମୌଳିକ କାବ୍ୟ ବକ୍ତବ୍ୟ ଓ କାବ୍ୟ ଅନୁଭବ ନିମିତ୍ତ ନୂତନ କାବ୍ୟଭାଷା ଓ ନୂତନ କାବ୍ୟ ଆବେଗର

ଆବଶ୍ୟକତା ପ୍ରଥମେ ଗୁରୁବାବୁଂକ କବିତାରେ ଉପଲବ୍ଧ ହେଲା । ତାଂକର କବିତାସମୂହ, ଓଡ଼ିଆରେ ପ୍ରଥମ ଥର ପାଇଁ ରାଧାନାଥ-ପରଂପରାରୁ ମୁକ୍ତି ଲଭ କରି 'ନୂତନ ଚେତନା'କୁ ସ୍ପଷ୍ଟ ଭାବରେ ପ୍ରକାଶ କଲା ଏବଂ ତରୁଣତର କବିମାନଙ୍କୁ ନୂତନ ଭାବରେ କବିତା ଲେଖିବାକୁ ପ୍ରେରଣା ଦେଲା । ('ସମୁଦ୍ର ସ୍ନାନ' ଆଲୋଚନା, ସଚ୍ଚିଦାନନ୍ଦ ମୋହନ ମହାଂତି, ପ୍ରଜ୍ଞା-୩,୧୯୭୧,ପୃଷ୍ଠା-୩)

ଗୁରୁବାବୁଂକ କାବ୍ୟଭାଷା ସମୃଦ୍ଧ, ବୈଚିତ୍ର୍ୟମୟ, ଶକ୍ତିଶାଳୀ ଓ ସ୍ୱଚ୍ଛନ୍ଦ । ତାଂକ କବିତାରେ ଶବ୍ଦସମୂହର ଅଦ୍ଭୁତ ଓ ଆବେଗପୂର୍ଣ୍ଣ ସମିଶ୍ରଣ ପାଠକ ମନରେ ନୂତନ ଅନୁଭବର ଉଦ୍ରେକ କରିଥାଏ । ଉଦାହରଣ ସ୍ୱରୂପ ତାଂକର ଯେ କୌଣସି କବିତାର ଯେ କୌଣସି ୨/୩ ଧାଡ଼ିକୁ ନିଆଯାଇ ପାରେ । ନିମ୍ନରେ କେତୋଟି ମାତ୍ର ଉଦାହରଣ ଉଲ୍ଲେଖ କରାଯାଇ ପାରେ ।

(୧) "ତୁମକୁ ମୁଁ ଖୋଜିଥିଲି ଦୀର୍ଘ କ୍ଷମା ଆଶା ଓ ସ୍ୱପ୍ନରେ ।
ସ୍ୱପ୍ନ କାହିଁ ? କ୍ଷମା କାହିଁ ? ସମୟର ବିବର୍ଣ୍ଣ ବିସ୍ତୃତି "
(ସନେଟ୍-୬)

(୨) "ଆକାଶର ଶୂନ୍ୟତାରେ ପୃଥିବୀର ଦୁରନ୍ତ ଏ ଗତି
ତୁମର ବା ଶେଷ କେବେ ଶେଷ ମୋର ସମୟ ଓ ସ୍ଥିତି ?"
(ସନେଟ୍-୭)

(୩) "ଅକସ୍ମାତ୍ ଏ କି ଭୟ—
କେଉଁ ଘୋର ଦୁର୍ଦ୍ଦିନ ବା କେଉଁ ଘୋର ମହାପାତକର !"
(ହରେକୃଷ୍ଣ ଦାସ-୨)

(୪) "ମୁଁ କହିଲି ଭଲ ପାଅ, ଭଲ ପାଅ ସତେ ଭଲ ପାଅ
ମୁଁ ଶୁଣିଲି କାନରେ ମୋ ହାଡ ଆଉ ମାଂସର ସ୍ପନ୍ଦନ
ମୁଁ ଦେଖିଲି ବାମ ଅଂଗ ପଂଗୁ ମୋର ବର୍ଣ୍ଣ ମୋର ଇଷତ୍
ପିଂଗଳ ।"                                    (କାଳପୁରୁଷ-୫୭-୬୦)

ଉପରୋକ୍ତ ୪ଟି ଉଦ୍ଧୃତିରେ 'ପ୍ରଶ୍ନ', 'ବିସ୍ମୟ' ଓ 'ପୁନରାବୃତ୍ତି' ('ସ୍ୱପ୍ନ', 'କ୍ଷମା', ଶେଷ', ଓ 'କେଉଁ ଘୋର') ନୂତନ କାବ୍ୟଆବେଗ ସୃଷ୍ଟି-କାରୀ କାବ୍ୟଗୁଣରେ ପରିଣତ ହୋଇଅଛି ।

ରୋମାଣ୍ଟିକ୍ ପରିବର୍ତ୍ତେ ଶ୍ଳେଷାତ୍ମକ ଦୃଷ୍ଟିଭଙ୍ଗୀ ଗୁରୁବାବୁଙ୍କ କବିତାର ଅନ୍ୟ ଏକ ବୈଶିଷ୍ଟ୍ୟ । 'ଗୋବର ଗଣେଶ' କବିତାରେ ପ୍ରକାଶିତ ଶ୍ଳେଷ ଓଡ଼ିଆ କବିତାରେ ପୂର୍ବରୁ ପରିଲକ୍ଷିତ ହୋଇ ନ ଥିଲା । ଏହି କବିତାର ନାୟକ ଶାରଣ୍ଟ ଓ ଗୌରବରହିତ ଗୋବର ଗଣେଶ ଏବଂ ପ୍ରକୃତ ଅର୍ଥରେ ସେ ନାୟକ ନୁହେଁ—ଏହାହିଁ ଏହି କବିତାରେ ସବୁଠୁ ବଳ ଶ୍ଳେଷ । ('ସମୁଦ୍ର ସ୍ନାନ' ଆଲୋଚନା, ପଞ୍ଚାନନ୍ ମୋହନ ମହାନ୍ତି 'ପ୍ରଜ୍ଞା'-୩, ୧୯୭୧,ପୃଷ୍ଠା-୯)

ତାଙ୍କ କବିତାରେ ପ୍ରକାଶିତ ଆଧୁନିକ ଜୀବନର (୧) ବିଫଳତା, (୨) ଅସଫଳତା, (୩) ସମସ୍ତ ଚେତନାର ଶବ ଓ (୪) ମୃତ୍ୟୁର ଅନୁଭବ ଓଡ଼ିଆ କବିତାରେ ସମ୍ପୂର୍ଣ୍ଣ ନୂତନ ଏବଂ ସମସାମୟିକ ସଭ୍ୟତାର ଜଟିଳତାଜନିତ ପ୍ରତିକ୍ରିୟା ସ୍ୱରୂପ ଧ୍ୱଂସ, ଅବକ୍ଷୟ, ଜରା, ମୃତ୍ୟୁ ଓ ବ୍ୟାଧିର ଅନୁଭୂତି ମାଧ୍ୟମରେ ସମୟର 'ଦୁରନ୍ତ ଗତି' ('ଶଠ') ପ୍ରତି ସଚେତନ ଦୃଷ୍ଟିଭଙ୍ଗୀ ତାଙ୍କ ପୂର୍ବରୁ ପ୍ରକାଶିତ ହୋଇ ନ ଥିଲା । ଏଠାରେ ନିମ୍ନୋକ୍ତ ଉଦାହରଣ ଗୁଡ଼ିକୁ ଲକ୍ଷ୍ୟ କରାଯାଇପାରେ ।

(୧) ମୁଁ ଦେଖେ ତୁମର ଦେହ ହଠାତ୍ ଯାଏ ଭାଙ୍ଗିଆ ପାଲଟି'କମ୍ବା 'ସିନେମାର ହାଣ୍ଡବିଲ ମୁଁ ଦେଖିଛି ତୁମର ଦେହରେ ।' (ଅଳକା ସାନ୍ୟାଲ) । (୨) 'ମଣିଷର କେତେ ସ୍ୱପ୍ନ ଆଶା ଓ ନିରାଶା କେତେ/ଯୋଜନା ଓ କମିଟି ଭିତରେ ।' (ହରେକୃଷ୍ଣ ଦାସ-୨) । (୩) 'ସ୍ତିମିତ ତାରାର ଲୁହ ଆକାଶରୁ ପୁଣି ଆକାଶକୁ/ଶୀତର କୁହୁଡ଼ିଯାଏ ପାରିହୋଇ ଆଜ ଯେବେ ଦିଗନ୍ତରୁ କେତେ ଦିଗନ୍ତକୁ ।', (ନିହତ ଗୋଧୂଳି) କମ୍ବା 'ନିସ୍ତବଧ ଶିପହରେ ପତ୍ର ଝଡ଼ା ଶୁଭେ ନାହିଁ ଖବର ନିଶ୍ୱାସ' (ଆଖିର କପୋତ ମୋର) । (୪) 'ଜରା ମୃତ୍ୟୁ

ବ୍ୟାଧି ପୁଣି ଜୀବନର ଅର୍ଥ ବୁଝିବାକୁ ।' (ଆଖିର କଟୋଚ ମୋର) ଜନ୍ମ। 'ମୁଁ ଆଜ ପଠାଏ ମୋର ଏ ଷରଡ଼ ଭସ୍ମ ପୁଣି ସ୍ତୂପ ସ୍ତୂପ/ ନିରର୍ଥକ ବାଲି/ମୁଁ ପଠାଏ ତୁମ ପାଇଁ ମୋର ଶ୍ଳେଗ ଯନ୍ତ୍ରଣା ଓ ଟମା ଦେହର/ଝାଳ ଆଜ ଚାନ୍ତିର ଖବର । ମୁଁ ପଠାଏ ତୁମଆଡ଼େ ମୋର ଶତ ପ୍ରେତାତ୍ମାର ନିଷ୍ଟା/ଯେତେ ଆଶା ଆଜ ମୋର ପିତୃପୁରୁଷର ଜବ ମୃତ୍ୟୁ ବ୍ୟାଧିର ଖବର ।' (୬୦) ।

ଏପରିକି 'ପିକ୍‌ନିକ୍' ଓ 'ଛୁଟିର ଖବ' କବିତା ଦୁଇଟିର ଗ୍ରାମ୍ୟ ପ୍ରକୃତି ପରିବେଶରେ ମଧ୍ୟ କାବ୍ୟ ନାୟକର ମୁକ୍ତି ନାହିଁ । 'ଜହ୍ନ ଧୀରେ ଧୀରେ ଶେଷକୁ ନିସ୍ତେଜ ହୋଇଯାଏ 'ଏବଂ ଆମେ ସବୁ ବୁଢ଼ୀ ଦେଖୁ ବାରବାଟି ବୃଣପାଖେ ନିଗ୍ରୁଟିଆ ଗଡ଼ର ପରିଖା' (ପିକ୍‌ନିକ୍) । ପୁନଶ୍ଚ 'ନିଗୁଛିଆ ଜୋର ପାଣି, ନିଗୁଛିଆ ନେଳ ଶୀଜଳରେ, ହିପ୍ରହର ହଳଦିଆ' ପାଲଟିଯାଏ ଏବଂ 'ତୁମ ଗାଆଁ ଓ ଆମ ଗାଆଁ, ଶ୍ରୀହୀନ ଖରାରେ ବିଷଣ୍ଣ' ହୋଇଯାଏ । ( ଛୁଟିର ଖରା' ) ।

ଉପରୋକ୍ତ କାବ୍ୟଗୁଣ ସହିତ ସଂସାରର ନିଷ୍ଠୁରତା, ମୋହ, ଅସାରତା, କାବ୍ୟ ନାୟକର ନିର୍ଲିପ୍ତ ମନୋଭାବ ଓ ଅସହାୟତା ମଧ୍ୟ ଗୁରୁବାବୁଙ୍କ କବିତା ସମ୍ଭାରର ଅନ୍ୟତମ ବୈଶିଷ୍ଟ୍ୟ ଏବଂ ଏ ସବୁର ଶୀର୍ଷତମ ପରିପ୍ରକାଶ ହୋଇଛି 'କାଳପୁରୁଷ' ।

ବର୍ଷା ବା ଜୀବନର ସୂଚନାରେ 'କାଳପୁରୁଷ'ର ଆରମ୍ଭ ହୋଇଥିଲେ ହେଁ ଏହା 'ନିଷ୍ଠୁର' ଓ 'ନିର୍ମମ' ଏବଂ ଏହି ଅନୁଭୂତି ସମଗ୍ର କବିତାରେ ସଂପ୍ରସାରିତ । କବିତାର ଶେଷ ପର୍ଯ୍ୟାୟ ନର୍କରାଜ ବର୍ଣ୍ଣନା ପ୍ରସଙ୍ଗରେ ସାମ୍ପ୍ରତିକ ମଣିଷର ଅସହାୟତା ସୂଚିତ । ଏହି ଉପଲବ୍ଧି,

(୧) "ଏକ ଦେହରେ ଜନ୍ମ ନେଲି ପୁରୁଷ ମୁଁ ସେହି ଦେହେ
ନାରୀର ଶୃଙ୍ଗାର"

× × × × (୩୩୩)

"× × ରାଜାଙ୍କର ଇଳା ନାମେ
ଏକମାତ୍ର ପୁତ୍ର ଓ ଦୁହିତା..."(୩୩୫—୩୩୭)

ଏବଂ (୨) "କଲ୍ଯ ମୋର ସମ୍ମୁଖରେ ଏ ଚରିତ ଏକପାଦ ଭଗ୍ନିଷ୍ଟ
ବୃଷଭ
ପୁଣି ଏହି ଭଦ୍ରଲୋକ ଧଳାଧୋତି ପଞ୍ଜାବୀ ଓ
ଧଳାଟୋପି ଧଳାକାର ବର୍ଣ୍ଣ ପୁଣି ଈଷତ୍ ପିଙ୍ଗଳ
ଯଷ୍ଟିର ଆଘାତ ଆଜ ବୃଷଭର ଆର୍ତ୍ତନାଦ..."
(୩୩୯—୩୪୨) ଇତ୍ୟାଦି ବର୍ଣ୍ଣନାରେ

ସୁସ୍ପଷ୍ଟ ଓ ଗମ୍ଭୀର ।

'ଭାଗବତ' (୯ମ ସ୍କନ୍ଧ-୧ମ ଅଧ୍ୟାୟ) ବର୍ଣ୍ଣିତ 'ଇଳା' କନ୍ୟା ବଶିଷ୍ଠଙ୍କ ଦ୍ଵାରା ପୁତ୍ର 'ସୁଦ୍ୟୁମ୍ନ'ରେ ପରିଣତ ଏବଂ ଯୁବକ ଅବସ୍ଥାରେ ମୃଗୟା ଉଦ୍ଦେଶ୍ୟରେ 'ସୁକୁମାର' ବନରେ ପ୍ରବେଶ କରି ମହାଦେବଙ୍କ ପୂର୍ବ ଅଭିଶାପରୁ ସ୍ତ୍ରୀତ୍ୱ ପ୍ରାପ୍ତି । ପୁନଶ୍ଚ ସେଇ ସଦାଶିବଙ୍କ ଦୟାରୁ ଆଜୀବନ ଏକମାସ ପୁରୁଷ ଓ ଏକମାସ ସ୍ତ୍ରୀ ହେବା ପ୍ରସଙ୍ଗ ପ୍ରଥମ ଉଦାହରଣରେ ସୂଚିତ ।

ଦ୍ଵିତୀୟ ଉଦାହରଣରେ ମଧ୍ୟ 'ଭଗବତ' (୧ମ ସ୍କନ୍ଧ-୧୬ଶ ଅଧ୍ୟାୟ) ବର୍ଣ୍ଣିତ ଉପାଖ୍ୟାନର ସୂଚନା ଦିଆଯାଇଅଛି । 'ବୃଷଭ' ହେଉଛି ଧର୍ମ । ଏହାର ଚାରିପାଦ—ତପ, ଶୌଚ, ଦୟା ଓ ସତ୍ୟ । ତପ, ଶୌଚ, ଓ ଦୟାରୂପକ ତିନପାଦ ଯଥାକ୍ରମେ ସତ୍ୟ, ତ୍ରେତୟା ଓ ଦ୍ଵାପର ଯୁଗରେ ନଷ୍ଟ ହୋଇ, କଳିଯୁଗରେ କେବଳ ଗୋଟିଏ

ପାଦ 'ସତ୍ୟ' ହିଁ ରହିଛି । ସେହି ଏକମାତ୍ର ପାଦଟିକୁ କଳି ଯଷ୍ଟିରେ ଅଘାତ କରୁଛି ।

ପ୍ରଦ୍ୟୁମ୍ନର ଏକମାସ ଅନ୍ତରରେ ଯଥାକ୍ରମେ ପୁରୁଷତ୍ୱ ଓ ସ୍ତ୍ରୀତ୍ୱ ପ୍ରାପ୍ତି ଏବଂ ଏକପାଦ ବିଶିଷ୍ଟ ବୃଷଭକୁ ଯଷ୍ଟି ପ୍ରହାର—ଉଭୟ ବର୍ଣ୍ଣନା ପ୍ରସଂଗରେ କାବ୍ୟନାୟକର ଅସହାୟତା ଗମ୍ଭୀର ଓ ସୁସ୍ପଷ୍ଟ । 'ଭାଗବତ' ବର୍ଣ୍ଣିତ ଉପାଖ୍ୟାନ ସହିତ ସାଂପ୍ରତିକ ମଣିଷର ଅସହାୟତା ସମପର୍ଯ୍ୟାୟର ହୋଇ-ଥିବାରୁ କାବ୍ୟୋପଲବ୍ଧି ତାତ୍ପର୍ଯ୍ୟପୂର୍ଣ୍ଣ ହେବା ସଂଗେ ସଂଗେ ଐତିହ୍ୟ ସହିତ ସଂଯୋଗ ସ୍ଥାପିତ ହୋଇ ପାରିଛି । ସେହିପରି ପକ୍ଷୀକ୍ଷିତ, ଅକ୍ରୁର, ଉଦ୍ଧବ, ଅଜଗର ପ୍ରଭୃତି ପୌରାଣିକ କାବ୍ୟବସ୍ତୁ ଉତ୍‌ଥାପନ ବା ମିଥ୍ ପ୍ରୟୋଗରେ କାବ୍ୟବକ୍ତବ୍ୟ ବଳିଷ୍ଠ ଓ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଜୀବନର ନୂତନ ମୂଲ୍ୟ ନିରୂପଣରେ ସହାୟତା କରିଛି । ଫଳରେ ରାଧାନାଥ-ପରଂପରା ପ୍ରଭାବିତ ଓଡ଼ିଆ କବିତାର ଧାରା ପରିବର୍ତ୍ତିତ ହୋଇ ପରବର୍ତ୍ତୀ କାଳରେ ବୈଚିତ୍ର୍ୟମୟ ଓ ସମୃଦ୍ଧିଶାଳୀ ହୋଇପାରିଛି ।

ଏହି ପରିପ୍ରେକ୍ଷୀରେ ଅନ୍ତତଃ ଏତିକ ନିଶ୍ଚିତ ଭାବରେ କୁହାଯାଇ ପାରେ ଯେ, କାବ୍ୟବକ୍ତବ୍ୟ ନିମିତ୍ତ କାବ୍ୟୋପଯୋଗୀ ସଂପ୍ରସାରଣଶୀଳ ସଂଯତ ଭାଷା, ସମସ୍ୟସଚେତନ ନୂତନ ଅନୁଭବ ଏବଂ ପରଂପରା ସହିତ ସଂଯୋଗ ସ୍ଥାପନରେ ନୂତନ ଦୃଷ୍ଟିଭଂଗୀ ଇତ୍ୟାଦି କ୍ଷେତ୍ରରେ, ଗୁରୁବାବୁଙ୍କ କବିତା ନିକଟରେ ଆମେମାନେ ଋଣୀ ।

— ବଂଶୀଧର ଷଡ଼ଙ୍ଗୀ



ମୁଁ କଲେଜ ଛାତ୍ର ଥିଲାବେଳେ ଗୁରୁପ୍ରସାଦଙ୍କ କବିତା ପ୍ରଥମେ ପଢ଼ିବାକୁ ପାଇଥିଲି । 'ନୂତନ କବିତା' ଓ 'ସମୁଦ୍ରସ୍ନାନ' ବହି ରୂପରେ ମିଳିବା ପୂର୍ବରୁ, ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ କବିତାଗୁଡ଼ିକୁ ପଢ଼ିବାରୁ

ଅଲଗା କରି ଏକ 'ବ୍ୟକ୍ତିଗତ ସଂକଳନ' କରିଥିଲି । ସେଇ ସଂକଳନରେ ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ, ବେଣୁଧର ରାଉତ, ବିନୋଦ ଚନ୍ଦ୍ର ନାୟକ ଓ ଅନ୍ୟମାନଙ୍କର କବିତା ସହିତ ଗୁରୁପ୍ରସାଦଙ୍କ କେତେଗୋଟି କବିତା ମଧ୍ୟ ଥିଲା ।

'କାଳପୁରୁଷ'ର ଏକ ହାତଲେଖା 'କପି' ହିଁ ମୁଁ ପ୍ରଥମେ ପଢ଼ିବାକୁ ପାଇଥିଲି । ମୋର ଜଣେ ସହାଧ୍ୟାୟୀ ବନ୍ଧୁ କବିତାଟି ପଢ଼ି ଏତେ ବେଶୀ ମୁଗ୍ଧ ହୋଇ ଯାଇଥିଲେ ଯେ, ସେ ସଂପୂର୍ଣ୍ଣ କବିତାଟିକୁ 'ପ୍ରଜ୍ଞା' ପୃଷ୍ଠାରୁ ଉତାରି ନେଇଥିଲେ । କେବଳ ସେତିକ ନୁହେଁ, ବିଶେଷ କୌଣସି କାର୍ଯ୍ୟ ନ ଥିଲାବେଳେ ଶ୍ରେଣୀ କକ୍ଷରେ, କଲେଜ ଭିତର ଓ ବାହାର ପଡ଼ିଆରେ ଏକ ଅତି ଦ୍ରୁତ ଢଂଗରେ 'କାଳପୁରୁଷ'ର ବିଭିନ୍ନ ଅଂଶ ଆବୃତ୍ତି କରିଥିଲେ । ସେ ପ୍ରାୟ ନୀରବ ଥାଆନ୍ତି । ମଝିରେ ମଝିରେ କୌଣସି ଉପକ୍ରମଣିକା, ଭୂମିକା ବା ଗୌର ଚନ୍ଦ୍ରିକା ପୂର୍ବରୁ ହଠାତ୍ କହି ଉଠନ୍ତି :

ସେଦିନ ଆସିଲା ବର୍ଷା...
ସ୍ମାର୍ଟ ଦାସ ଇଂଜିନିଅର...
ଗୋଡ଼ ଘଷି ଖସିଗଲା ପଶିବା ସ୍ଲେପାରେ
ତାର ବା ଦୋଷ କଣ ? —ଇତ୍ୟାଦି ।

ଏହି ସହାଧ୍ୟାୟୀ ବନ୍ଧୁ—ସଂସର୍ଗରୁ ହିଁ ଗୁରୁପ୍ରସାଦଂକ କବିତା ସହିତ ମୁଁ ସଂପୃକ୍ତ ।

ତାଙ୍କୁ ପ୍ରଥମ ଥର ପଢ଼ିଲା ବେଳେ ତାଙ୍କ କବିତାର ଗୀତିମୟତା ମୋତେ ମୁଗ୍ଧ କରିଥିଲା । ଦ୍ୱିତୀୟ ଥର ଦେଖିଲା ବେଳକୁ ଅନେକ ଚିତ୍ରା ଚିହ୍ନା ମୁହଁ ଓ ଦୃଶ୍ୟ ମୋତେ ସ୍ମୃତି ଓ କଳ୍ପନାର ଏକ ଜଗତରେ ବନ୍ଦୀ କରି ରଖିଥିଲେ । ତୃତୀୟ ଥର ଜାଣିଲା ବେଳକୁ ଗୁରୁପ୍ରସାଦଂକ କେବଳ ଗୋଟିଏ କବିତା ହିଁ ପଢ଼ି, ଦେଖି, ଶୁଣି ଚାଲିଛି ମୁଁ । ଏବେ ବୁଝୁଛି ଯେ, ସେ କେବଳ ଗୋଟିଏ କବିତା ହିଁ ଲେଖି ଚାଲିଛନ୍ତି ଏ ପର୍ଯ୍ୟନ୍ତ ।

ତାଙ୍କର ଏ Continuity ହିଁ ତାଙ୍କୁ ବାରଂବାର ବର୍ଲ ଯୋଗାଉଛି । ତେଣୁ ମୋର ମନେ ହୁଏ ତାଙ୍କ କବିତାକୁ ବିଭିନ୍ନ ନାମ ଦେଇ ଖଣ୍ଡ ଖଣ୍ଡ କରି, ଖଂଡ ଖଂଡ କରି ଆଦୌ ଉପଭୋଗ କରିହେବ ନାହିଁ । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାରେ ମଧ୍ୟବିତ୍ତମାନଙ୍କର ଏକ ସୁପରିଚିତ ଜୀବନ-ପ୍ରବାହକୁ ଗୁରୁପ୍ରସାଦ ନିଜ କବିତାରେ ଲିପିବଦ୍ଧ କରିଥିବାରୁ କବିତାଗୁଡ଼ିକ ଏ ମାଟିର ନିକଟତର ହୋଇ ପାରିଛଂତି । 'କାଳପୁରୁଷ'ର ଅନେକ ଅଂଶ ସରଳତା, ସ୍ୱଚ୍ଛତା ଓ ବୋଧତାର ଉଦାହରଣ ରୂପେ ବ୍ୟବହୃତ ହୋଇ ପାରିବ । ଏ ଭାଷାର କବିତାକୁ ଚିନ୍ତାଶୀଳ ଲୋକଙ୍କ ମଧ୍ୟକୁ ଫେରାଇ ଆଣିବାରେ ଗୁରୁପ୍ରସାଦ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଛଂତି । କୌଣସି ଏକ ଆବେଗ ବା ପ୍ରେରଣାର ପ୍ରବଳ ଚାପ ନ ପଡ଼ିବା ଯାଏଁ ସେ କବିତା ଲେଖି ପାରଂତି ନାହିଁ ।

ସେଇଥି ଯୋଗୁ ହିଁ ବୋଧହୁଏ ତାଙ୍କ ନିକଟରୁ ଖୁବ୍ ଅଳ୍ପ କବିତା ପଦାକୁ ଆସି ପାରଂତି ।

ଗୁରୁପ୍ରସାଦ ଖୁବ୍ ଅଳ୍ପ ଲେଖନ୍ତି ।

ଏହା ହିଁ ମୋର ଅଭିଯୋଗ ।

× × ×

କେତେକ ସମାଲୋଚକଙ୍କ ମତରେ ଗୁରୁପ୍ରସାଦ ହେଉଛଂତି ଓଡ଼ିଆ ଭାଷାରେ ଇଂରାଜୀ କାବ୍ୟଧାରାର ଜଣେ ପ୍ରଧାନ ସାଧକ । ମାତ୍ର ତାଙ୍କ କବିତାରେ ଯଥେଷ୍ଟ ଶୈଳୀଗତ ଇଂରେଜୀଆ ଗୁଣ ଥିଲେ ହେଁ, ତାଙ୍କ କବିତାର ଭୂଦୃଶ୍ୟ, ଚରିତ୍ର, ଘଟନା, ପରିବେଶ ଓ ସଂଳାପରେ ଯେଉଁ ଓଡ଼ିଆତ୍ୱ ରହିଛି, ସେଥିଯୋଗୁଁ କବିତାର ପ୍ରଶଂସାରେ ଅଟକି ନ ଯାଇ ମୁଁ ବାରଂବାର କବିତାର ନିକଟତର ହୁଏ । ତେଣୁ ଗୁରୁପ୍ରସାଦଙ୍କୁ ମୁଁ ଇଂରେଜୀ ଶୈଳୀ ଓ ଓଡ଼ିଆ ଜୀବନର କବି ଭାବରେ ଗ୍ରହଣ କରି ଆସିଛି ।

ଆଉ କେତେକ ସମାଲୋଚକ କହନ୍ତି ଯେ ଗୁରୁପ୍ରସାଦଙ୍କ କବିତାରେ କୌଣସି ପ୍ରକାର ସାମାଜିକ ପ୍ରତିବଦ୍ଧତା ନାହିଁ । ମାତ୍ର ସତ୍ଯ କବିତା ବା କଳାକୃତିରେ ପ୍ରତିବଦ୍ଧତାର ସଂଧାନ ହୁଏତ ଏକ ନିର୍ଦ୍ଦିଷ୍ଟ ଜାତୀୟ କବିତାର ଗୋଷ୍ଠୀକରଣ ସକାଶେ ସହାୟକ ହୋଇପାରେ । ସାମାଜିକ ପ୍ରତିବଦ୍ଧତା ଜାହିର ନକଲେ ଭଲ କବିତାର ଏକ ଅତି ଆବଶ୍ୟକୀୟ ଉପାଦାନ ହୋଇ ନ ପାରେ । ଗୁରୁପ୍ରସାଦଙ୍କ କବିତାରେ ଏହି ଉପାଦାନର ଅଭାବ ଯୋଗୁଁ, ଏହା ଜନ-କବିତା, ଲୋକ-କବିତା ହୋଇ ନ ପାରେ । ତାଙ୍କ ଭାଷାର ସାଂଭ୍ରାନ୍ତ୍ୟ ଯୋଗୁ ହିଁ ସେ ପଲ୍ଲୀବାସୀ ନିରକ୍ଷର ଲୋକଙ୍କ ସକାଶେ ଦୁର୍ବୋଧ ମନେ ହେବେ । ମାତ୍ର ଆମେ କଣ ଚିରଦିନ ପାଇଁ ଆଶା କରିବା ଯେ, ଲୋକେ ପଲ୍ଲୀବାସୀ ଓ ନିରକ୍ଷର ହୋଇ ରହିଥାଆନ୍ତୁ ?

ନିଜର ସମାଜ ଓ ପରିବେଶକୁ ସେ ଯେଉଁ ଚମତ୍କାର ଢଙ୍ଗରେ ନିଜର କବିତାରେ ଜୀବନ୍ତ କରି ପାରିଛନ୍ତି, ତାହା ଯେତେ ପରିଚିତ ମନେ ହେଲେ ହେଁ, ସର୍ବଦା ଅନନୁକରଣୀୟ । ଏହି କାରଣରୁ ଓଡ଼ିଆ କବିତା ଆଲୋଚନାରେ ସେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ।

—ପ୍ରଫୁଲ୍ଲ କୁମାର ତ୍ରିପାଠୀ



# ଗୁରୁ ପ୍ରସାଦ ଓ ମୁଁ

୧। ଗୁରୁପ୍ରସାଦ ୧୯୬୦ ଅଗଷ୍ଟରେ 'ଓ୍ୱେଷ୍ଟଲାଣ୍ଡ'ର କଟକ ସଂସ୍କରଣ 'କାଳ-ପୁରୁଷ' ପ୍ରକାଶ କଲେ ।

୨। ଗୁରୁପ୍ରସାଦଙ୍କ କାବ୍ୟ ଭାଷାର ଚମତ୍କାରିତା ଓ ରୂପକଳ୍ପ ତତ୍କାଳୀନ ତରୁଣ ସ୍ରଷ୍ଟାଙ୍କୁ ପ୍ରଭାବିତ କଲା । ପୟାର ଛନ୍ଦର ସାଫଲ୍ୟ ମଧ୍ୟ ଅନେକ କବିଙ୍କୁ ଅନୁରୂପ ଛନ୍ଦ ମାଧ୍ୟମରେ ପରୀକ୍ଷା ନିରୀକ୍ଷା କରିବାକୁ ଆକୃଷ୍ଟ କଲା ।

୩। ଆନ୍ତର୍ଜାତିକ କାବ୍ୟ-ଧାରାସହିତ ଓଡ଼ିଆ କବିତାକୁ ସଂଯୁକ୍ତ କରିବାପାଇଁ ସଚି ବାବୁ ଓ (ପ୍ରାୟ ୧୯୬୦ ପର୍ଯ୍ୟନ୍ତ) ରମାକାନ୍ତ ବାବୁ ଉଦ୍ୟମ କରିଥିଲେ । 'କାଳପୁରୁଷ' ଓଡ଼ିଆ କବିତା ବିଶ୍ୱର କ୍ଷେତ୍ରରେ ଏକ ସ୍ୱକୀୟମାନ (standard) ପ୍ରତିଷ୍ଠା କଲା । ଆଧୁନିକ କାବ୍ୟ ଚେତନାର ଯଶସ୍ୱୀ ସମା-

୧। ୧୯୬୦ରେ ବିଧିବଦ୍ଧଭାବେ ମୁଁ କବିତା ଲେଖା ଆରମ୍ଭ କଲି ଏବଂ ମନଯୋଗପୂର୍ବକ 'କାଳପୁରୁଷ' ଅଧ୍ୟୟନକଲି ।

୨। ଆମେ(ସୌଭାଗ୍ୟବାବୁ,ଦେବଦାସ,ରାଜେନ୍ଦ୍ର, ପ୍ରଭାସ,ମୁଁ ଇତ୍ୟାଦି) କବିତା ଲେଖିବା ଆରମ୍ଭ କଲା ବେଳକୁ ସଚି ରାଉତରାୟ, ରମାକାନ୍ତ ରଥ ଓ ଗୁରୁପ୍ରସାଦ ମହାନ୍ତି ଯଶସ୍ୱୀସ୍ରଷ୍ଟାଭାବେ ସ୍ୱୀକୃତ ହୋଇଥିଲେ । ତେଣୁଆମ କାବ୍ୟବିଭବକୁ ଶକ୍ତିମନ୍ତ କରିବା ପାଇଁ ଆମେ ସେମାନଙ୍କ କାବ୍ୟ ପୃଷ୍ଠଭୂମି ସଂପର୍କରେ ଅବହିତରହି ପରୀକ୍ଷା ନିରୀକ୍ଷା କରୁଥିଲୁ ।

୩। ସାହିତ୍ୟ ମୂଲ୍ୟ ମୁଖ୍ୟତଃ ସ୍ୱୀକୃତ ଲେଖା ବିରୁଦ୍ଧରେ ପ୍ରତିକ୍ରିୟା ବା ଗୌଣ ସ୍ରଷ୍ଟାଙ୍କ ପାଇଁ ସ୍ୱୀକୃତିର ପକ୍ଷ ସମର୍ଥନ ହୋଇଥିବାରୁ ସମକାଳୀନ ସ୍ରଷ୍ଟାମାନେ କବିତା ସୃଷ୍ଟି କ୍ଷେତ୍ରରେ ସ୍ୱକୀୟ ମୁଦ୍ରାଙ୍କନ ନିମନ୍ତେ ପ୍ରୟାସୀ ହେଲେ ଏବଂ ଗୁରୁପ୍ରସାଦ ସଚି ରାଉତରାୟ ଓ ରମାକାନ୍ତଙ୍କ କାବ୍ୟ ସିଦ୍ଧିକୁ ସ୍ୱୀକାର କରି ତଥା ଆମର ପାରମ୍ପରିକ ପୃଷ୍ଠ-ଭୂମି, ଗୀତିମୟ ଐତିହ୍ୟ (Lyrical tra-dition) ଆଧ୍ୟାତ୍ମିକ ସମ୍ବେଦନଶୀଳତାକୁ ମୂଳରେ ରଖି ଉତ୍ତର "କାଳପୁରୁଷ" ଯୁଗର କବିରୂପେ ମୁଁ କବିତା ସୃଷ୍ଟି କରିଛି ।

୪। ନିଜ କବିତାର ସମୀକ୍ଷାକରିବା ଅନାବଶ୍ୟକ ହେଲେ ମଧ୍ୟ ପ୍ରତ୍ୟେକ କବିକୁ ନିଜ କବିତା

ଲେଚକ ରୂପେ ଶ୍ରୀଯତୀନ୍ଦ୍ର ମୋହନ ମହାନ୍ତିଙ୍କ ପ୍ରତିଷ୍ଠିତ କଲି ।

୪।। ଗୁରୁପ୍ରସାଦକେନ୍ଦ୍ରୀୟ ସାହିତ୍ୟ ଏକାଡେମୀ ପୁରସ୍କାର ପାଇବାପରେ ଓ ତାଙ୍କ କବିତାର ବିବିଧ ବିଭିବ ବିଶେଷଭାବେ ବିଶ୍ଳେଶିତ ହେବାପରେ ତାଙ୍କଠାରୁ ଓଡ଼ିଆ କବିତାଅଧିକ କିଛି ଲାଭ କରି ପାରିଲି ନାହିଁ । ସମୁଦ୍ରର ନୁହଁନ୍ତି, ସେ ସେମିତିଗୋଟିଏଭିତରର କବି ହୋଇ ରହିଗଲେ । କୋଡ଼ିଏଟି କବିତା ଓ ଦଶଟି ସନେଟ୍ ମଧ୍ୟରେ ତାଙ୍କକାବ୍ୟ ପ୍ରତିଭା ସୀମିତ ରହିଲା ।

ଅଲଗିଭାବରେ ସମୀକ୍ଷା କରିବାକୁ ହୋଇଥାଏ । ସମୀକ୍ଷକମାନଙ୍କର ମନ୍ତବ୍ୟ କେବେ କେବେ ସତ୍ୟର ନିଷ୍ଠୁର ଦର୍ପଣରେ ନିଜକୁ ଦେଖିବା ପାଇଁ ସୁଯୋଗ ଦିଏ । ଏଯାବତ୍ ରଚିତ ମୋର କବିତା ସଂର୍କରେ ମୁଁ ପ୍ରାୟତଃ ବିଜ୍ଞ ସମାଲୋଚକ ମାନଙ୍କଠାରୁ ଅନୁକୂଳ ମନ୍ତବ୍ୟ ପାଇଛି । ଜଣେ ଦୁଇଜଣ ଅସହିଷ୍ଣୁ ସମାଲୋଚକ ଯେଉଁମାନେ ଓଡ଼ିଆ କବିତାକୁ ନ୍ୟୁନ ଦୃଷ୍ଟିରେ ଦେଖୁଛନ୍ତି ସେମାନେ ଅବଶ୍ୟ ନିନ୍ଦା କରିଛନ୍ତି । ସେମାନେ ତ ଯୁଗେ ଯୁଗେ ଥାଆନ୍ତି ଏବଂ ରହିବେ ହିଁ ! ତେବେ ମୋ କବିତାକୁ ଗୁରୁପ୍ରସାଦଙ୍କ ସହିତ ତୁଳନା କରିବାକୁ ଯଦି କୁହାଯାଏ,ମୁଁ କହିବି ସେ ଆମର କାବ୍ୟଗୁରୁ ଏବଂ ଆମ୍ଭେମାନେ ତାଙ୍କର ଦାୟାଦ ।

## ପ୍ରହରାଜ ସତ୍ୟନାରାୟଣ ନନ୍ଦ

ଚଳିତ ଅନୁଭୂତିର ସର୍ଯ୍ୟାସ୍ତ ସଙ୍ଗେ ଯେମିତି ଆସିଗଲା କବି ଗୁରୁପ୍ରସାଦଙ୍କର'ସମୁଦ୍ରସ୍ନାନ'ପରେ । ଅନୁଭୂତିର ବହୁବିଧ ପର୍ଯ୍ୟାୟ ଭିତରେ ଯେଉଁ ନମ୍ର ମଣିଷଟି ଅଙ୍ଗୀକାର କରିନେଇଥିଲା ଦୁନିଆକୁ ଓ ଦୁନିଆର ଦାଉକୁ ବିନା ସାଲିସ୍‌ରେ, ସେ କାବ୍ୟ ପୁରୁଷଟି ଯେମିତି ସମୁଦ୍ର ସ୍ନାନପରେ କଠୋର ମାଡ଼ି ଭିନ୍ନ ଏକ ପଦଯାତ୍ରାରୁ ବିରତ ହୋଇଗଲା ଆମ ସାମ୍ନାରେ । ତଥାପି, ସେ ପଦଯାତ୍ରାର ପାଦଚିହ୍ନ

ଦେଖିବାକୁ କେତେକ ଶିଳ୍ପୀ ଓ ପାଠକଙ୍କର ଉନ୍ନିଦ୍ର ଅପେକ୍ଷା ।

କବି ଗୁରୁପ୍ରସାଦଙ୍କର କାବ୍ୟମାନସ ଅତୀତକୁ ବର୍ତ୍ତମାନ ସହ ଯୋଡ଼ି ବର୍ତ୍ତମାନକୁ ଶିଳାଲେଖ କରି ଭବିଷ୍ୟତକୁ କେଉଁ ଉଦାତ୍ତ ନିର୍ଲିପ୍ତ ହାତ ବଢ଼ାଇଥିଲେ କି ଅତୀତ ଓ ବର୍ତ୍ତମାନର ଭଙ୍ଗାଗଢ଼ା ଭିତରେ ଠିଆହୋଇ ନିଷ୍କରୁଣ ସମାଜକୁ ଭାଗ୍ୟବାଦୀ ଭଳି ସମ୍ମୁଗ୍ଧ ଦୃଷ୍ଟିରେ ଚାହିଁଥିଲେ ସେକଥା ସମାଲୋଚକମାନେ କହିବେ । କିନ୍ତୁ 'ମୂଲ୍ୟାୟନ'ର ସମ୍ପାଦକଙ୍କର ଅନୁରୋଧରେ କବି ଗୁରୁପ୍ରସାଦଙ୍କ କାବ୍ୟମାନସକୁ ମୁଁ ଯେମିତି ଜାଣିଛି ତାର ସାମାନ୍ୟ ରୂପା ମାତ୍ର ଏ ଆଲୋଚନା ।

କବି ଗୁରୁପ୍ରସାଦଙ୍କ କବିତା ଭିତରେ ଅଛି ଏକ ଭଙ୍ଗା ମଣିଷର ଛବି । ଆଶା ଓ ପ୍ରାପ୍ତିର ଲମ୍ବା ରାସ୍ତାକୁ ମାପିମାପି ସ୍ୱେଦସିକ୍ତ ମୁହୂର୍ତ୍ତରେ ଅବକ୍ଷୟୀ ଆଶାସମ୍ଭୂତ ସୁଶ୍ରୀସକଳ ସାଲିସ୍ । ଦୈହିକ ଓ ମାନସିକ ଯନ୍ତ୍ରଣା ଜର୍ଜରିତ ଚକ୍ରବ୍ୟୂହ ପରିବେଷ୍ଟନୀ ଭିତରୁ ମୁକ୍ତିପାଇବାର ଉଦ୍ଦାମ ବିକଳ ଭାବ । ସମାଜର ସ୍ତରକାନ୍ତୁ ଭିତରେ ସର୍ବଗ୍ରାସୀ ଦେହଜ କାମନାର ଅଗ୍ନିକଣାପ୍ରସୂତ ଅସଂଖ୍ୟ ବ୍ୟର୍ଥତାର ଶୂନ୍ୟ ଇଲାକାରେ ଓ ସମୟର ନିଠୁର ଯାନ୍ତ୍ରବାଣି ନିର୍ଦ୍ଦେଶନା ଭିତରେ କାବ୍ୟପୁରୁଷର ସଂଯତ ଓ ସୁସଂଯୋଜିତ ଦେହକେନ୍ଦ୍ରିକ ଆକାଶଛୁଆଁ ଚେତନା । ଏ ଚେତନା ଭିତରେ ସୁସ୍ଥ ପ୍ରବୃତ୍ତିର ଅଭାବ ହିଁ କାବ୍ୟ-ନାୟକୁ ମୁହାଁଇ ନେଇଛି ଅବକ୍ଷୟର ଠାଇରା ଭୂଇଁକୁ ଯାହା ଅନତିକ୍ରମଣୀୟ ଓ ପରାସ୍ତା ଅନୁଭୂତିମୟ ।

ସମୁଦ୍ର କୂଳରେ ବସି ଉଠିଥିବା ଝାଉଁବଣର ମର୍ମର ଯେମିତି ତାର ସାରାଜୀବନ ପାଇଁ ଏକାନ୍ତ ବଶ୍ୱଚେତନା । ତାଶଭିତରେ ଅପହାସ୍ୟ ମଣିଷର ଉଇଲଗା ବ୍ୟକ୍ତିତ୍ୱ । ଆଗକୁ ଯେତେ ମାଡ଼ି ଯିବାର ଜିଜ୍ଞାସା ଥିଲେବି ଗୋଡ଼ ତଳୁ ସ୍ୱେଦବାଲି ଖସିଯିବାର ସନ୍ଦେହାଛନ୍ନ ଭାବରୁ ସେ ମୁକ୍ତ ନୁହେଁ, ତ୍ରିଶଂକୁଧର୍ମୀ କଂଗ୍ରୁ ଆକାଶକୁସୁମ । ସେହି ତ୍ରିଶଂକୁ ଗ୍ରସ୍ତ ସ୍ୱପ୍ନ ପ୍ରବଣତା ଭିତରେ ଅନ୍ୱେଷଣ, ଆନ୍ଦୋଳନ ଓ ଶୃଙ୍ଖଳ ଶୃଙ୍ଖଳ ଭାବ ।

କବି ଗୁରୁପ୍ରସାଦଙ୍କ କାବ୍ୟମାନସ ସନ୍ଦେହାଛନ୍ନ ନୁହେଁ ବରଂ କେତେକ କ୍ଷେତ୍ରରେ ଶଂକାକୁଳ । ଚେତ୍ରବର୍ଣ୍ଣା ପୃଥିବୀ, ସେଠି ସ୍ୱପ୍ନ ଅଛି କିନ୍ତୁ ରଂଗ ନାହିଁ, ଗଛ ଅଛି, ଛାଇ ନାହିଁ । ସବୁ ଥାଇ ମଧ୍ୟ ପାଇବାଟା ଦୁର୍ମୂଲ୍ୟ । ନାୟିକା ତା ସାମ୍ନାରେ ସମ୍ଭୋଗର ବସ୍ତୁଟିଏ । ପ୍ରେମର ଅନ୍ୟନାମ କାମ, ମମତାର ନାମ ମିଳନ, ବିଯୋଗର ଶେଷଫଳ କେବେ ଶୂନ୍ୟ ନୁହେଁ । ଏସମସ୍ତ ଚେତନା ପ୍ରତି ସତର୍କ ଥାଇ ମଧ୍ୟ ନିରୁପାୟ ନାୟକ ଖୋଜେ ଗୋଟିଏ ମୁହୂର୍ତ୍ତର ଦେହଜ ଶାନ୍ତି, କାରଣ ଗୋଟିଏ ମୁହୂର୍ତ୍ତ ତାପାଇଁ ମୂଲ୍ୟବାନ ଅଭିଜ୍ଞତା । ପୌରୁଷ, ମ୍ରିୟମାଣ ହେଲେ ମଧ୍ୟ କ୍ଳୀବତ୍ୱରେ ଆଶ୍ଳେଷର ଆକାଂକ୍ଷା, ପରାଜୟରେ ତାର ସ୍ପଷ୍ଟ ସ୍ୱୀକାରୋକ୍ତି । ସେଠାରେ ତ୍ୟାଗପୂତ ପ୍ରଣୟ ନିଷ୍ଠା ଓ ମମତାବନ୍ଧ ସାମଗ୍ରିକ ପ୍ରଣୟାନୁଭୂତି ସ୍ୱପ୍ନ । ଜୀବନ ସଂଗ୍ରାମରେ କ୍ଷତ ବିକ୍ଷତ କାବ୍ୟମାନସ, ନିଜର ଦସ୍ୟୁମାୟ ସ୍ଥିତିର ଛକବନ୍ଧାରେ ବାଟ ଖୋଜୁଥିବା କାବ୍ୟ ପୁରୁଷ ଭିତରେ ଅଭିମାନ ନାହିଁ । ବରଂ ଯାହାହେଉ ବର୍ତ୍ତମାନର ଗ୍ଳାନିବୋଧରୁ ମୁକ୍ତି ପାଇଁ ଉଦଗ୍ର କାମନାର ପରିସମାପ୍ତିରେ ସେ ବେଶୀ ଅଗ୍ରହୀ । ସେଠାରେ ମାନସିକ ସ୍ତରରେ ଉପେକ୍ଷିତ ବା ଶୂନ୍ୟତାବୋଧରେ ଜର୍ଜରିତ ଭାବ, ବରଂ ସ୍ପୃହଣୀୟ, କିନ୍ତୁ ଦେହଜ କାମନାର ଫୁଲ୍‌ଫୁଟା ମୁହୂର୍ତ୍ତକୁ ଆପେଇ ଦେବା ସଂକ୍ରମଣୀୟ ।

ହୁଏତ ସବୁ ଅବକ୍ଷୟ ଭିତରେ କାବ୍ୟପୁରୁଷ ବର୍ତ୍ତମାନକୁ ଆକଣ୍ଠ ପାନ କରିବା ପାଇଁ ଚରିତ୍ରନ ପ୍ରୟାସୀ । ସବିଶାସୀ ସମସ୍ତ ଭିତରେ

(ଅବଶିଷ୍ଟାଂଶ ୧୪୮ ପୃଷ୍ଠାରେ)

# ଆଖିର କପୋତ ମୋର

ଆଖିର କପୋତ ମୋର ଆକାଶର ଇସ୍ପାତ ଦେହରେ
ବାଧାପାଇ ପ୍ରତାଡ଼ନ ଫେରିଆସେ ଏଇ ପୃଥିବୀକୁ
ଯେଉଁଠାରେ ତୁମେ କର ପ୍ରତିଦିନ ଜନନ ଯନ୍ତ୍ରଣା
ଜରା ମୃତ୍ୟୁ ବ୍ୟାଧି ପୁଣି ଜୀବନର ଅର୍ଥ ବୁଝିବାକୁ ।
ସମୁଦ୍ରର ଢେଉ ସବୁ ଛୋଟ ଛୋଟ ହାତ ପାପୁଲିରେ
ଯୁବକ ବାଳିର ଦେହ ଯେବେ ଦିଏ ଆଉଁଷି ଆଉଁଷି
ମୁଁ ଯାଏ ବିବ୍ରତ ହୋଇ ଭେଦି ଖଂଡ ଦଶନ୍ଦର ପ୍ରେମ ଧୂସରତା
ମୋର ପିତୃ ପୁରୁଷର ସ୍ମୃତି ଖୋଜି ତୁମର ଏ ବିବର୍ଣ୍ଣ ଦେହରେ-
ତୁମେ କୁହ କଥା କୁହ ଘାସ ଆଉ ପଥରର ଗୋପନୀୟ କଥା
ଘାଟିବଣ ଜଙ୍ଗଲର କଥା ଯେତେ ଶିଉଳି ଶାମୁକା
ଆଉ ସମୁଦ୍ରର କଥା ।

ବିବର୍ଣ୍ଣ ଗ୍ରନ୍ଥରେ ଛିନ୍ନ ବଉଦରେ ବିବର୍ଣ୍ଣ ଜନ୍ମର
ଏ ପାରରୁ ଭାସିଯାଇ ସେ ପାରିରେ ମରିଯିବା କଥା—
ଚଇତର ଜୀର୍ଣ୍ଣ ଦେହ ଏ ବାଳିର ଛୋଟ ଛୋଟ ଭଉଁରୀ ଭିତରେ
ଏପାଖ ସେପାଖ ଯାଏ ଉଡ଼ି ଉଡ଼ି ତୁମେ ନିଅ ସାଉଁଟି ସଉଁଟି
ତୁମେ ପୁଣି ଭଲପାଅ ତୁମେ ପୁଣି ହାତ ଧରି ଡାକ
ତୁମର ଆତ୍ମା ବା କାହିଁ ? ମୋ ଦେହ ବା ଜୀବନ କେଉଁଠି ?
ମେଘର ଇସ୍ପାତ ଦେହ ଛୁଇଁର ପୁଣି ବାଧାପାଏ ସେଠି ତୁମ
ମନର କପୋତ ।

ଆଖିର କପୋତ ମୋର ଫେରିଆସେ ଯେତେବେଳେ
ଆକାଶର ଭ୍ରାନ୍ତ ପାରି ହୋଇ
ତୁମର ଦେହରେ ଏଇ କ୍ଳାନ୍ତ ଆଉ ଭୋକଶୋଷ ଉତ୍ତେଜନା
ଖେଦ ଆଉ କୋହର ଭିତରେ

ମୋ ଦେହର ସ୍ୱପ୍ନ ଧରି ବୋହିଯାଏ ସମୟର ନଈ ।
ନିସ୍ତବ୍ଧ ଦୁପହରେ ପତଝଡ଼ା ଶୁଭେନାହିଁ ଖଗର ନିଶ୍ୱାସ,
ଝାଉଁବଣ ମିଶିଯାଏ ଧୂଆଁ ହୋଇ ଆକାଶ ଭିତରେ
ମନେ ମୋର ପଡ଼େନାହିଁ କେବେ ମୋର ଆଖିର କପୋତ
ତୁମର ସନ୍ଧାନ ଦିନେ ପାଇଥିଲା କଟକ ବା ଜଳପ୍ରିୟା ସହରର
ପ୍ରାନ୍ତରେ ।

ଦେହ ମନ ଆତ୍ମା ହେଉଛି 'ସମୁଦ୍ର ସ୍ନାନ'ର ମୁଖ୍ୟ କାବ୍ୟ ସ୍ୱର । ଦେହର ଯନ୍ତ୍ରଣାରେ ଅସ୍ଥିର କାତର ଗୁରୁପ୍ରସାଦଙ୍କ ମନର ସଂଶୟର କୁହେଳି ଭିତରୁ ଜନ୍ମ ନେଇଛି ଏଇ ରୋମାଣ୍ଟିକ ବାସ୍ତବ ଚେତନାଶୀଳ କବିତା 'ଆଖିର କପୋତ ମୋର' । କବିତାର ସ୍ୱର ଓ ସ୍ପନ୍ଦନ କଳ୍ପନା ଆଉ ବାସ୍ତବର ବିମିଶ୍ର ସମନ୍ୱୟ । 'କପୋତ'କୁ କବିଦୃଷ୍ଟିର କଳ୍ପନା ରୂପେ ଗ୍ରହଣ କରାଯାଇପାରେ । ମୁକ୍ତିର ସ୍ଫୁରଣ ଭାବରେ ମଧ୍ୟ ନିଆଯାଇପାରେ । କାରଣ କବିଙ୍କର କଳ୍ପନାଶ୍ରୟୀ ଯୌକ୍ତିକତାର ଯଥାର୍ଥ ବିଚାର ବିଶ୍ଳେଷଣ ସହଜ କଥା ନୁହେଁ । ଅନେକ ସ୍ଥଳରେ ଆନୁମାନିକତା ଉପରେ ନିର୍ଭର କରିବାକୁ ହେବ ।

ବାସ୍ତବବାଦୀ ଭାବୁକ କବି ତାଙ୍କର ଦୃଷ୍ଟିର ବିହଙ୍ଗକୁ ମୁକ୍ତି ଦେଇଛନ୍ତି ଆକାଶର ସୀମାହୀନ ଅନନ୍ତ ପଥରେ । ମୁକ୍ତ ଆକାଶ ହେଉଛି ମୁକ୍ତିର ସାଗର, ଯାହା କବି ଆତ୍ମାର ଅନ୍ୱେଷା । ପୃଥିବୀର ନାଗପାଶର ବନ୍ଧନରେ ପୀଡ଼ିତ, ଆସକ୍ତିର ଜ୍ୱାଳାରେ ଜର୍ଜରିତ ଆତ୍ମାକୁ କବି ଉତ୍ତରଣର, ଅନାସକ୍ତିର, ମୁକ୍ତିର ମହାନ ସଂଗୀତ ଶୁଣାଇବାକୁ ଯେତେବେଳେ ଆକାଶୀ ପଥର ସନ୍ଧାନ ଦେଇଛନ୍ତି, ଦେଖିଛନ୍ତି ଆକାଶ ଅସୀମ ଅନନ୍ତର ଅମୃତ ସ୍ୱାଦରେ ରୁଚିକର ଜୀବନର ମୁକ୍ତି-ମନ୍ତ୍ର ନୁହେଁ; ଏହା ବାସ୍ତବର ସୀମିତ ଧୂସର ସ୍ପର୍ଶରେ

କଠିନ । ଅବାଧ ମୁକ୍ତ ପରିବର୍ତ୍ତେ ସେଠି ଅଛି ବାସ୍ତବର କଠିନ ଗତିରୋଧକ ସ୍ତମ୍ଭ । ମଣିଷ, ଏଇ ପୃଥିବୀର ମଣିଷ, ଦେହଧାରୀ ମଣିଷ ପୃଥିବୀର, ଦେହର ଅସ୍ତିତ୍ୱକୁ ଅସ୍ୱୀକାର କରି ନ ପାରେ । ଫଳରେ ଆକାଶର 'ଇପ୍ସିତ ଦେହ'ରେ ବାଧା ପାଇ ଫେରି ଆସୁଛି ତାର ସେଇ ଦୁଃଖ ଶୋକ ଜରାଜର୍ଜର ରୋଗ ବ୍ୟାଧିଗ୍ରସ୍ତ ପରିଚିତ ପୃଥିବୀକୁ । ଏଇ ପୃଥିବୀର ଧୂସର ଦେହ ସହିତ ଜୀବ ଆତ୍ମାର ନିତ୍ୟ ପରିଚୟ । ସେଠି ନଥାଇ ବିଶ୍ୱାସର ଅବୁଝ ପ୍ରଶ୍ରୟ, ନ ଥାଇ ବଞ୍ଚିବାର ସହଜ ପ୍ରତ୍ୟୟ । ତଥାପି ସେଇ ଅବକ୍ଷୟୁତା ଆଉ ଦୁର୍ଭାଗ୍ୟରେ ଆକ୍ରାନ୍ତ ପୃଥିବୀକୁ ଜାଣିବାକୁ, ଦୁଃଖ ଜରାଗ୍ରସ୍ତ ଜୀବନର ପରିଚୟ ପାଇବାକୁ ମଣିଷର ନିରବଚ୍ଛିନ୍ନ ସଂଗ୍ରାମ । ପୃଥିବୀ ମଣିଷ ପାଇଁ ଏକ ରହସ୍ୟର ଉପଢୌକନ । କଳ୍ପନା ପ୍ରାଣ ଜୀବଆତ୍ମା ବାସ୍ତବର କଠିନ ସ୍ପର୍ଶରେ ପ୍ରତିହତ ହୋଇ ଫେରି ଆସୁଛି ସେଇଠିକୁ, ଯେଉଁଠି କାବ୍ୟ ନାୟିକା ଏକାକୀ ଜୀବନକ୍ଳାନ୍ତ ପରିବେଶର ଗୋପନ ଦ୍ୱାର ଉଦ୍‌ଘାଟନ କରିବାକୁ ସଂଗ୍ରାମରତ । ଶୂନ୍ୟତା ଆକାଶରେ ନାହିଁ; ମୁଠା ମୁଠା ଶୂନ୍ୟତା ଭରି ରହିଛି ମଣିଷର ନିଃସଙ୍ଗ ଏକାକୀତାରେ । କିନ୍ତୁ ନିତି ଚାହୁଁଛି ଏଇ କଠିନ ବାଧାର ଉଷର ବକ୍ଷକୁ ଅତିକ୍ରମ କରିବା ପାଇଁ, ମାତ୍ର ଅସହାୟ ଏକ ଯନ୍ତ୍ରଣା ନେଇ ଫେରିଆସୁଛି ତାର ବାସ୍ତବ ପରିବେଶକୁ । ଜରା ମୃତ୍ୟୁ ବ୍ୟାଧି ଜୀବନର ସୁସ୍ପଷ୍ଟ ରୂପ—ଆଉ ତାରି ଭିତରେ ସଂଗୋପିତ ରହିଛି ଜୀବନର ପ୍ରକୃତ ଅର୍ଥ । ଜୀବନକୁ ବୁଝିବାର ବାଟ ପଡ଼ିଛି ଦୁଃଖ ବ୍ୟଥା ଆଶଙ୍କା ଆଉ ବିଫଳତାର ପରିଧି ଭିତରେ । ଗୁରୁପ୍ରସାଦଙ୍କ କବିତାର ପରିବେଶ ହେଉଛି ଜରା, ବ୍ୟାଧି, ମୃତ୍ୟୁ, ବିଷଣ୍ଣତା, ଜୀର୍ଣ୍ଣତା, ବିବର୍ଣ୍ଣତା ଆଉ ସ୍ଥବିରତାର ପରିବେଶ । ଏ ସବୁ ଅବକ୍ଷୟୁତାର ପ୍ରତୀକ ।

ସମୁଦ୍ର ଆଉ ବାଲୁକାରାଶି ପ୍ରେମିକ ଓ ପ୍ରେମିକାର ଭୂମିକାରେ ଅବତୀର୍ଣ୍ଣ । ସମୁଦ୍ରର ଉଚ୍ଛ୍ୱାସ ନେଇ କବି ଆତ୍ମା ଆତ୍ମପ୍ରକାଶ କରିଛି । ତାଙ୍କର ସ୍ଥାବର ଦେହ ଏବଂ ନାୟିକାର ଦେହ ବିବର୍ଣ୍ଣ । ଛୋଟ ଛୋଟ ହାତ ମାପୁଥିଲେ କୈଶୋରର ବା ଅତୀତର ସ୍ମୃତି ସନ୍ତକ । ସମୁଦ୍ର ମମତାନିକାମକ ଦୃଷ୍ଟିରେ, ଅତୀତର ସ୍ମୃତି ସ୍ମରଣରେ ସ୍ଥାବର ବାଲି ଦେହରେ ଭରି ଦେଇଛି ଜୀବନର ଉଷ୍ମତା । ଏଇ ରୋମାଣ୍ଟିକ୍ ପରିବେଶରେ ନାୟକ ଖରା ଦୁପହର ତପ୍ତ ଧୂସରତା ଭେଦି ଅର୍ଥାତ୍ ସକଳ ସାମାଜିକ ନୀତିର ପ୍ରତିବନ୍ଧକକୁ ଏଡ଼ି ନାୟିକାର ବିବର୍ଣ୍ଣ ଦେହରେ ଖୋଜିଛି ଅତୀତର ସ୍ମୃତି—ଦୈହିକ କାମନାର ଉତ୍ତପ୍ତ ପ୍ରବାହ । ନାୟିକା ହେଉଛି ବାତୁଳ, ଜୀବନ-ପ୍ରେମୀ । ଘାସ, ପଥର, ଝାଉଁବଣ, ଜଙ୍ଗଲ, ଶିଉଳି, ଶାମୁକା ଆଉ ସମୁଦ୍ର—ମଣିଷ ମନର ଅଦ୍ଭୁତ ସୀମାହୀନ ପୁଣି ଖଣ୍ଡ ଖଣ୍ଡ ସ୍ମୃତିର ଶୋଭାଗାର । ଏ ସବୁ ଅତୀତର ସ୍ମୃତି ହେଉଛି ପୁଣି ଯୌନ ଚିତ୍ରକଳ୍ପର ଆଭାସ, କବିଙ୍କର କାବ୍ୟିକ ଚେତନାକୁ ସ୍ପଷ୍ଟତର କରିବାରେ ସହାୟକ ।

ତେବେ ଜୀବନର ପ୍ରେମମର୍ମରିତ ଉଚ୍ଛ୍ୱଳତା ଭିତରେ ଧସେଇ ପଶିଯାଏ ରାତିର ବିଷଣ୍ଣତା । ଅଖଣ୍ଡ ପରିପୂର୍ଣ୍ଣ ଜୀବନ ସମାରୋହ ଛିନ୍ନବିଚ୍ଛିନ୍ନ ପରି ଖଣ୍ଡ ବିଖଣ୍ଡ ହୋଇପଡ଼େ । ଜୀବନର ଅପୂର୍ଣ୍ଣତା, ବିଚ୍ଛିନ୍ନତା ସହଜରେ ବାରି ହୋଇପଡ଼େ । ବିଷଣ୍ଣ ରାତି, ବିବର୍ଣ୍ଣ ଜହ୍ନ, ଛିନ୍ନ ବଉଦ—ଏସବୁ କବି ଅନୁଭୂତିର ଏକ ନିରନ୍ଧ୍ର, ଅନ୍ଧକାର ଓ ଅସହାୟତା ତଥା ନିଃସଙ୍ଗତାର ସଙ୍କେତ । କିନ୍ତୁ 'ଏ ରାତିରୁ ଭାସିଯାଇ ସେପାରିରେ ମିଳିଯିବା କଥା'—ଏଇ ଅସ୍ତମିତ ଜହ୍ନ ମୃତ୍ୟୁ ଚେତନାର ସୂଚକ ନୁହେଁ । ଏହା ଜନ୍ମରୁ ଜନ୍ମାନ୍ତର ବା ଭବରୁ ଭବାନ୍ତର ସଂକ୍ରମଣର କଥା କହେ ।

କବିଙ୍କର ବିରହ କବିତାରେ ଯୌବନରୁ ନେଇ ଅନେକ ଉଚ୍ଛ୍ୱାସ । ନିଶବ୍ଦ ଚରଣ ଗ ଏ ଗଳ ଗନ୍ଧ ସ୍ୱପ୍ନା ସ୍ୱପ୍ନା, ଯୌବନର ସପନ, ଚରଣର ଗୋପନ ନୂପୁର,— 'ଏଇନ' ଅର୍ଥରେ ସଂପାଦିତ । ଏଠାରେ ଯୌବନ ନୂତନତା ବା ସୁନ୍ଦରତାର ପ୍ରତୀକ । ଯୌବନର ଧ୍ୟାନରେ ଯେମିତି କାଳିକା ବକ୍ଷରେ ଲହରି ସୃଷ୍ଟି ହୁଏ, ସେମିତି ଦେହର ବାଲିଚର ଉପରେ ପ୍ରେମ ଅନେକ ସ୍ମୃତିର ଆବର୍ତ୍ତ ରଚନା କରେ । ଅଶାନ୍ତର ସେଇ ବିକ୍ଷିପ୍ତ ସ୍ମୃତିକୁ, ଜୀବନର ମାଧୁର୍ଯ୍ୟ କଣାକୁ, ଦାମ୍ଭିକା ଭୋଜନରେ – ଚଞ୍ଚଳ ପ୍ରେମକୁ ସଫଳ ସୌନ୍ଦର୍ଯ୍ୟରେ ପୁଣି ଭରିଦେବାପାଇଁ, "ତୁମେ ପୁଣି ଭଲପାଅ ତୁମେ ପୁଣି ହାତ ଧରି ଡାକ"—ସେ ଏକ ପ୍ରୀତିର ଆହ୍ୱାନ । ଏଇ ଡାକ କାବ୍ୟପୁରୁଷ ଅନ୍ତରକୁ ଆନ୍ଦୋଳିତ କରିବାର ମାତ୍ରେ କ୍ଷଣରେ ମନରେ ଉଠେ ସଂଶୟର ଝଡ଼ । ଜୀବନର ଏକ ଶୀର୍ଷ ମୁହୂର୍ତ୍ତରେ, ଆବେଗମୁଖର ସୁଖକର କ୍ଷଣଟିରେ କବି ମନର ଜିଜ୍ଞାସା—'ତୁମର ଆତ୍ମା ବା କାହିଁ ? ମୋ ଦେହ ବା ଜୀବନ୍ତ କେଉଁଠି ?'—ଏଇ କାବ୍ୟ ଜିଜ୍ଞାସାରେ ଆଧୁନିକ ମାନବର ସଂଶୟ ସଂକ୍ଷୁବ୍ଧ ମନର ନିରୋଳ ପ୍ରକାଶ । ସଂଶୟପୂର୍ଣ୍ଣ ପ୍ରେମର ବିଫଳ ପରିଣତି ପାଇଁ ଦାୟୀ । ପରିପାର୍ଶ୍ୱକୁ ଅସ୍ୱୀକାର କରି ସେଇ ଅଧମମାନଙ୍କର ଜୀବନ ଉପଭୋଗର ଯେଉଁ ଅନାବିଳ ଅନାହତ ଆକାଂକ୍ଷା ଆଜିର ମଣିଷ ହରାଇ ବସିଛି । ଏଠାରେ ଇଲିୟଟ୍‌ଙ୍କର ଚିନ୍ତାଧାରା କବିଙ୍କୁ ଯେତେ ପ୍ରଭାବିତ କରି ଥାଉନା କାହିଁକି କବିଙ୍କର ବ୍ୟକ୍ତିଗତ ଅନୁଭୂତିର ସ୍ୱକୀୟତା ସହଜରେ ଉପଲବ୍ଧ କରିହୁଏ । କବିଙ୍କର ଜିଜ୍ଞାସା ଓ ଅନ୍ୱେଷା ଭିତରୁ ଜଣାଯାଏ କବିପ୍ରାଣ ଏଠି ଆତ୍ମ ଅନୁସନ୍ଧାନରେ ବ୍ୟସ୍ତ । ଦେହ ଓ ଆତ୍ମାର ମିଳନର ସୁବର୍ଣ୍ଣ କ୍ଷଣଟି କେତେବେଳେ ମଣିଷକୁ ଫାଙ୍କି ଦେଇ ତାକୁ ଡାକି ଦେଇଛି ସଂଶୟର ମେଘରେ ।

ଜୀବନର ଅସମ୍ପୂର୍ଣ୍ଣତା ଓ ଅସଫଳତାର ଚିତ୍ର ଏହି କବିତାଟି ଭିତରେ ଉଚ୍ଚାରିତ । ଦେହ ଓ ଆତ୍ମାର ମିଳନରେ ଜୀବନର ପୂର୍ଣ୍ଣତା, ସଂଶୟରେ ପୂର୍ଣ୍ଣତା ଖଣ୍ଡିତ ହୁଏ । ଏଇ ସଂଶୟ ସୃଷ୍ଟି ସଂକ୍ରମିତ ହୋଇଛି ନାୟିକାର ମନରେ । ପ୍ରେମର ସ୍ୱପ୍ନ ନେଇ ଭାସି ଯାଉଥିବା ଲଘୁପକ୍ଷ ମେଘ ଇସ୍ପାତର ଅର୍ଥାତ୍ ବାସ୍ତବର କାଠିନ୍ୟ ନେଇ ପାଇଛି ନାୟିକାର ପ୍ରୀତି ଉଚ୍ଛ୍ୱସିତ ଭାବପ୍ରବଣ ମନ । ନାୟିକାର ଆଶା ଆଉ ନାୟକର ସ୍ୱପ୍ନ ଭିତରେ ଜୀବନ ଯୌବନର ମହାର୍ଘ ମୁହୂର୍ତ୍ତ ହଜିଯାଏ ସଂଶୟ ଆଉ ଆତ୍ମ ଅନ୍ୱେଷଣର ଅଜସ୍ର ଭ୍ରାନ୍ତି ଭିତରେ । ଦୁଃଖ, ଖେଦ, ଜୈବିକ କ୍ଷୁଧା ଆଉ କ୍ଳାନ୍ତିର ଅଶେଷ ଯନ୍ତ୍ରଣା ନାୟିକାର ଦେହ ମନକୁ କରେ ଶୀର୍ଣ୍ଣ ବିବର୍ଣ୍ଣ । 'ମୋ ଦେହର ସ୍ୱପ୍ନ ଧରି ବୋହିଯାଏ ସମୁଦ୍ରର ନଈ ।' ମନରେ ବ୍ୟାକୁଳତା, ଦେହେ ନାହିଁ ନିଃଶ୍ୱାସରେ ପ୍ରଖରତା ସମୟର ସର୍ବଗ୍ରାସିତା ଭିତରେ ଜୀବନର ସ୍ୱପ୍ନ ଝଡ଼ିପଡ଼େ । ଝାଉଁବଣ ମିଶିଯାଏ ଧୂଆଁ ହୋଇ ଆକାଶ ଭିତରେ । କବିର ପ୍ରେମିକା ହଜିଯାଏ ଅତୀତର କେଉଁ ଏକ ଧୂସର ସଂଧ୍ୟାରେ । ନାୟକର ମନେ ବି ପଡ଼େନା କେବେ କେଉଁଠି ନାୟିକା ସହିତ ତାର ସାକ୍ଷାତ ଘଟିଥିଲା — ବର୍ତ୍ତମାନ/କଟକ ବା ଅତୀତ/ଜନ୍ମଭୂମିରେ ସେ ପାଇଥିଲା କାବ୍ୟ ନାୟିକାର ସଂଧାନ । ଏଇ ବସ୍ତୁତଃ କବିଙ୍କ କାବ୍ୟ ପୁରୁଷର ଦେହ ଆତ୍ମାର ସଫଳ ସଂଯୋଜନ ପାଇଁ ବିରାଟ ପ୍ରଶ୍ନବାଚୀ ।

ମଣିଷ ପାଇଁ ଆଜି ଯାହା ସତ୍ୟ, କାଲି ତାହା ମିଥ୍ୟା । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ — ଏଇ ତ୍ରିକାଳର ପରିଧି ଭିତରେ ଗତିଶୀଳ ମଣିଷର ମନ ପାଇଁ କିଛି ବି ନିଶ୍ଚିତ ନୁହେଁ, ସତ୍ୟ ନୁହେଁ, ସ୍ଥିର ନୁହେଁ । ତା' ଜୀବନର ସର୍ବଶ୍ରେଷ୍ଠ ବିବେକ ପ୍ରେମ ଚିରନ୍ତନ ପ୍ରତିଶ୍ରୁତି ଦେଇପାରେନା କି ପାଇ ପାରେନା । କାଳର

ଉଦଗ୍ର ପ୍ରେମ ଧୂଆଁ ହୋଇ ମିଶିଯାଏ ଅନନ୍ତ ଶୂନ୍ୟରେ । ଯେତେବେଳେ ନାୟିକା ହଜିଯାଏ ଅଗଣିତ ରଥଚକ୍ରତଳେ ସେତେବେଳେ ନିଃସୀମ ଶୂନ୍ୟତା ଭିତରେ ନାୟକ ଏକ ଯନ୍ତ୍ରଣା ଜର୍ଜରିତ ପୃଥିବୀ ବକ୍ଷରେ ସାଜେ ଜୀବନ ଶିଳ୍ପୀ ।

ଏକ ପକ୍ଷରେ କବି ହେଉଛନ୍ତି ଭାବପ୍ରବଣ, ରୋମାଣ୍ଟିକ ପ୍ରେମଧର୍ମୀ, ଅନ୍ୟପକ୍ଷରେ ଏକ ଅସଫଳ ସମ୍ପୃକ୍ତ ଶୀତଳ ପ୍ରେମର ଶବ୍ଦକାର । ଚମ୍ପାଫୁଲର ମହକରେ କୁହୁକର ମାୟାଜାଲ ଯୋଗୀକୁ ମଧ୍ୟ ସଂସାର ଜାଲରେ ଛନ୍ଦିଦିଏ । ମାଂସ ଫୁଲହୋଇ ଫୁଟେ, ମନ ରୋମାଞ୍ଚରେ ଢୋଳପଡ଼େ ପୁଣି ଗୋବର ଗଣେଶ ନାୟକର ଏକ ଶାନ୍ତ ଅସହାୟ ଅଭାବବୋଧ ଭିତରେ ପ୍ରେମର ସମ୍ପୃକ୍ତ ବ୍ରୀଡ଼ ରୂପଟି ସମଧିକ ପରିବ୍ୟାପ୍ତ । ଦେହାଶ୍ରିତ ପ୍ରେମ ପରିବର୍ତ୍ତେ ଦେହଜ କାମନାର ଉତ୍କୃଷ୍ଟି ପ୍ରେମକୁ କରିଛି ସଂକୋଚିତ ।

ଦେହର କ୍ଳାନ୍ତି, ମନର ଉତ୍ତେଜନା, ଦୈହିକ କ୍ଷୁଧା, ନ ପାଇବାର ଦୁଃଖ ଓ କୋହର ପ୍ରଶମନ ପାଇଁ ଏଥିରେ କୌଣସି ନିର୍ଦ୍ଦିଷ୍ଟ ଚଳନ୍ତି ଇଙ୍ଗିତ ନାହିଁ । ସ୍ୱପ୍ନକୁ କ୍ରିୟାଶୀଳ କରିବା କଥା ଭାବୁ ଭାବୁ ସମସ୍ତ ତାକୁ ଠକି ଦେଇଛନ୍ତି । କବି କାଳ ସଚେତନ, ଜୀବନ ସଚେତନ ନୁହନ୍ତି ।

ଯେଉଁ ନାରୀକୁ କବି 'ତୁମେ' ବୋଲି ସମ୍ବୋଧନ କରିଛନ୍ତି ସେ କୌଣସି ନିର୍ଦ୍ଦିଷ୍ଟ ନାରୀ ହୋଇପାରେ, ପୁଣି ତାର କୌଣସି ସତ୍ତା ନଥାଇ ବି ପାରେ । ଗୁରୁପ୍ରସାଦଙ୍କ ଆଧୁନିକ ମାନସର ଅନ୍ୟତମ ପ୍ରକାଶ ତାଙ୍କର ଶବ୍ଦ ପ୍ରୟୋଗ ସ୍ତରରେ ପରିଲକ୍ଷିତ । ଆକାଶର ଉତ୍ତପ୍ତ ଦେହ, ଆମର ପୂର୍ବ ରଚିତ ଚିନ୍ତାଧାରା ମୂଳରେ ତୀବ୍ରବେଗ ଆଘାତ ହାଣି ମନକୁ ଦୋହଲାଇ ଦିଏ । ସୃଷ୍ଟି କରେ ନୂତନ ଜୀବନାନୁଭୂତି । କେତେକ ଶବ୍ଦର ବାରମ୍ବାର ଉଚ୍ଚାରଣ

ତାଙ୍କ ବ୍ୟକ୍ତିତ୍ୱ ଓ ରଚନାଶୈଳୀର ସ୍ୱାଭାବିକ ସ୍ୱରୂପ ବିଚାରରେ ଗୃହୀତ। ସବୁଠି ସାଙ୍ଗଠନ ଓ କଳେବର ନାୟକଙ୍କୁ ମୁଁ ଅସ୍ୱୀକାର କରି ପରିବାଦ କରୁ ସତ, କିନ୍ତୁ ଆଧୁନିକ କବିତା ରଚନା କ୍ଷେତ୍ରରେ କବି ନୂତନ ଶୈଳୀ ଓ ଭାବର ପ୍ରବର୍ତ୍ତକ।

ଗୁରୁପ୍ରସାଦଙ୍କ କବିତାର ବିଶେଷ ଆକର୍ଷଣ ଅନୁଭୂତିର ଚରିତ୍ରବନ୍ଧ ବିଶ୍ୱସ୍ତତାର ସହିତ ପ୍ରସାରିତ କରିବା ପାଇଁ ତାଙ୍କର ଆନ୍ତରିକ ଉଦ୍ୟମ।

— ରେଖା ମହାନ୍ତି



# ସୁନାର ଝରଣା

ହସି ହସି ଝରୁଥିଲା ସିମେଣ୍ଟର ଚଟାଣ ଉପରେ
ସୁନାର ଝରଣା;
ସେତେବେଳେ ଏ ଗଳିରେ ଝରୁଥିଲା ପୁଣି ଥିଲେ ଲୋକେ
ପୁଣି ଥିଲା ମୋ ଦେହରେ ପଞ୍ଜରର ପାଳିତ ମୂର୍ଚ୍ଛନା।
ପଞ୍ଜରର କୁହୁଡ଼ି ପର ଛାଇ ହଜେ ଜହ୍ନ ଜଳିଯାଏ
ଝିଙ୍କାପଥ ଠେଲି ଠେଲି ଧୂଳି ଯାଏ ସମସ୍ତ ବି ଯାଏ
ଜୀବନର ବର୍ତ୍ତି ଏ ଖସିଯାଏ ଆସ୍ତେ ଖସିଯାଏ।
ନଦୀରେ ମୁଁ ଶୋଇଥିଲି କ୍ଳାନ୍ତ ଦେହ କ୍ଳାନ୍ତ ଥିଲା ମନ
ଆଖିରେ ମୋ ସ୍ମୃତି ଥିଲା କାମିଜର ରଫୁରେ ରଫୁରେ
ଏ ଦେହରେ ସ୍ୱପ୍ନ ଥିଲା, ଥିଲା ମୋର ଜୀବନର ଗାନ।
ସେତେବେଳେ ଅକସ୍ମାତ୍ ଜହ୍ନ ଯାଏ ଉଠି
ସେତେବେଳେ କୁହୁଡ଼ିରେ ଝିଙ୍କାପଥ ଯେପରି ଟୋପି ଟାଣି

ଏତେବେଳେ ହଠାତ୍ ମୁଁ ଜାଣିପାରେ ସବୁ
ଦେହରେ ମୋ ଛୁଇଁଗଲା ଛପି ଛପି ଗୋପନ ଦକ୍ଷିଣା ।
ପଞ୍ଜରର କୁହୁଡ଼ିରେ ଜହ୍ନ ହସେ ତାର ହଜଯାଏ
ହସି ହସି ଝରିଯାଏ ସିମେଣ୍ଟର ଚଟାଣ ଉପରେ
ସୁନାର ଝରଣା,
ତା ଅଖିର ଡୋଳା ତଳେ ଡେଇଁଉଠେ ମୋ ମୁହଁର ଗୁଳ ।

ମୁଁ ଚୁମ୍ବିଛି ତା' ଆଖିକୁ ଅପଲକ ପୁଣି ଭଷାହୀନ
ତା ଓଠରେ ଯେତେ ଫୁଲ ଡାଳ ହୋଇ ରଙ୍ଗ ଗୋଳଦଏ
ମୁଁ ଖୋଜୁଛି ଖୋଜମିଳି ସେଠି ମୋର ପ୍ରାଣର ସଂଧାନ ।
ତା ପାଦରେ ଛନ୍ଦ ଅଛି, ତା ଆଖିରେ ଝିକମିକ ତାରା

ତା ଦେହରେ ଯେତେ ତେଜ ଜହ୍ନ ଆଉ ତାରା ଆଲୁଅର
ତା ବେଣୀରେ ଲୀଳାୟିତ ସ୍ୱପ୍ନ ଯେତେ ଉଆଁସ ରାତର
ତା ଭିତରେ ଆଶା ମୋର ରହେ ଅବା ଗୋପ୍ୟ ନରାକାର ।

ଝରଣାର ବେଣୀ ଝୁଲେ ଝରଣାର ଶାଢ଼ୀ ତେଜ ଖେଳେ
ପଞ୍ଜରର କୁହୁଡ଼ିରେ ଆଖିରେ ମୋ' ଜ୍ୟୋତି ଯେବେ ନଭେ
ଝରଣାର କୂଳେ କୂଳେ ଆପ୍ଲୁତ ମୁଁ ଏକ ପଥିକ
ପାଣି ଖୋଜେ ସ୍ୱପ୍ନ ଖୋଜେ, ଖୋଜେ ମୋର ପାପର ଆଲୋକ ।

ସୁନାର ଝରଣା ଯାଏ ଝରି ଝରି ସିମେଣ୍ଟର ଚଟାଣ ଉପରେ
ପଞ୍ଜରର କୁହୁଡ଼ିରେ ଝରେ ଝରେ ଦୁର୍ନିବାର
ଆପ୍ଲୁ ମୋଞ୍ଚ ଘଟ ଝଡ଼ପଡ଼େ
ମୁଁ ତାକୁ ପାଇବ ଭଲ ବ୍ୟର୍ଥତା ମୋ ପୁଂଜୀଭୂତ କରି
ଜୀର୍ଣ୍ଣ ମୋର ଅବଶେଷ ଜାଳ ପୋଡ଼ ପଞ୍ଜରର ମ୍ଳାନ ଗୋଧୂଳିରେ ।

କବିତାଟିର ନାଁ ପଢ଼ିବା ମାତ୍ରେ ପାଠକର ମନରେ ପ୍ରଶ୍ନ ଉଠେ, "ଝରଣା ସୁନାର ହବ କେମିତି ?" ପ୍ରଥମ ଦ୍ୱୀଧାଡ଼ି ପଢ଼ିବା ପରେ ଏଥିରେ ଯେ ଝରଣା ବିଷୟରେ କୁହାଯାଉନି, ତା' ସ୍ପଷ୍ଟ ହୋଇଯାଏ । କାରଣ ଝରଣା ନିର୍ଜୀବ । ହସିବାର ଶକ୍ତି ତାର ନାହିଁ । ପୁଣି ଝରଣା ଝରେ ପ୍ରକୃତି-କୋଳରେ, ବଣ-ପାହାଡ଼ରେ । ମାତ୍ର ଏ କବିତାରେ ଝରଣା 'ସିମେଣ୍ଟର ଚଟାଣ ଉପରେ' ଝରିପିବା କଥା କୁହାଯାଇଛି । 'ସିମେଣ୍ଟର ଚଟାଣ' ଏକ କୃତ୍ରିମ ପରିବେଶର ସୂଚନା ଦିଏ ।

ଏତିକିରୁ 'ସୁନାର ଝରଣା'ର ପ୍ରକୃତ ଅର୍ଥ କଣ, ପାଠକ ଠିକ୍‌ଭାବେ ବୁଝି ପାରେନି । ସେ ଯେତେବେଳେ ୨୬ତମ ଧାଡ଼ି "ଝରଣାର ବେଣୀ ଝୁଲେ ଝରଣାର ଶାଢ଼ୀ ଡେଉଁ ଖେଳେ" ପାଖରେ ପହଞ୍ଚେ, ସେତେବେଳେ 'ସୁନାର ଝରଣା' ଯେ ଜଣେ ସୁନ୍ଦରୀ ତଥା ରୂପସୀ ଯୁବତୀର ପ୍ରତୀକ, ଏକଥା ଆଉ ଅଛପା ରହେନି । କାରଣ ବେଣୀ ଓ ଶାଢ଼ୀରୁ ଝରଣାର ଅର୍ଥ ନାରୀ ବୋଲି ସୂଚନା ମିଳେ । ତା'ପରେ 'ଝରଣା'ର ବିଶେଷଣ 'ସୁନାର' । ସୁନା ଦେଖିବାକୁ ସୁନ୍ଦର ଓ ସମସ୍ତଙ୍କର ପ୍ରିୟ। ସମସ୍ତେ ତାକୁ ପାଇବାକୁ ଇଚ୍ଛା କରନ୍ତି । ସେମିତି ନାରୀ ଯୌବନରେ ଖୁବ୍ ସୁନ୍ଦରୀ ଦିଶେ ଓ ସମସ୍ତଙ୍କର ପ୍ରିୟ ହୋଇ ଉଠେ । ତେଣୁ କବିତାର କାବ୍ୟ-ନାୟିକା ଜଣେ ରୂପସୀ ଯୁବତୀ । କାବ୍ୟ-ପୁରୁଷ ତାକୁ ଲାଭ କରିବାକୁ ଚେଷ୍ଟା କରିବା ସ୍ୱାଭାବିକ । କିନ୍ତୁ ସୁନା ଲାଭ କରିବାଭଳି ଭାଗ୍ୟ ସମସ୍ତଙ୍କର ନଥାଏ । କାବ୍ୟ-ପୁରୁଷ ବି ତା'ର ପ୍ରେୟସୀକି ପାଇନି । ପ୍ରେମରେ ସେ ବିଫଳ ହୋଇଛି । କବିତାର ଶେଷ ବାକ୍ୟ ବା ୩୩-୩୪ତମ ଧାଡ଼ି 'ମୁଁ ତାକୁ ପାଇଛି ଭଳି ବଂଚିଛି ମୋ' ପୁଞ୍ଜିଭୂତ କରି × ×"ରେ ଏହା ସ୍ପଷ୍ଟ ପରିସ୍ଫୁଟ ।

କବିତାର ପ୍ରଥମ ସ୍ତବକରେ ବ୍ୟବହୃତ ସମସ୍ତ କ୍ରିୟା ଅତୀତ କାଳର । ଯଥା— ଝରିଗଲା, ଥିଲା ଓ ଥିଲେ । ଏହା ସହିତ ଭୂତାର୍ଥ ଧାତୁର "ସେତେବେଳେ ଏଗଛରେ ଖଗଥିଲା × × ×" ରେ 'ସେତେବେଳେ' ସୂଚାଇ ଦିଏ ଯେ 'ସୁନାର ଝରଣା'ର ଝରିବା କାହିଁକି ଅତୀତର ଏକ ଘଟଣା ଓ ସ୍ମୃତିର ସାମଗ୍ରୀ । ଏଇ ଘଟଣାର ବାରମ୍ବାର ପୁନରାବୃତ୍ତି (୧ମ-୨ୟ, ୧୬-୧୭ତମ ଓ ୩୦ତମ ଧାଡ଼ି ଦେଖନ୍ତୁ) କାବ୍ୟ-ପୁରୁଷ ମାନସରେ ସେଇ ସ୍ମୃତିର ନିବିଡ଼ତା କେତେ, ତା'ର ପରିଚୟ ଦିଏ । କାବ୍ୟ ପୁରୁଷର ସେଇ ପ୍ରିୟ ସ୍ମୃତିର ରୋମନ୍ଥନ ହିଁ ଏଇ କବିତାର ବୈଶିଷ୍ଟ୍ୟ ।

ଝରଣା କୁଳୁକୁଳୁ ନାଦ କରି ଅଙ୍କେଇ ବଙ୍କେଇ ବହିଯାଏ । ସେମିତି ନାରୀମାନଙ୍କ ଗତି ଦୋଳାୟିତ ଓ ସେମାନେ ଚାଲିଲାବେଳେ ପାଦର ଅଳଙ୍କାର ରୁଣୁଝୁଣୁ ଶବ୍ଦ କରେ । ତେଣୁ ଏଠି 'ସୁନାର ଝରଣା ଝରିଯିବା'ର ଅର୍ଥ ରୂପସୀ ଜଣକ ଲୀଳାୟିତ ଗତିରେ ରୁଣୁଝୁଣୁ ଧ୍ୱନି କରି ଚାଲିଯିବା । ସେ ଖାଲି ସେମିତି ଚାଲିଯାଇନି; 'ହସି ହସି' ଯାଇଛି । ଏଇ 'ହସିବା' ଭିତରେ କାବ୍ୟ-ପୁରୁଷ ପ୍ରତି ନାୟିକାର ପ୍ରେମର ଇସାରା ନିହିତ । ତା'ପରେ

"ସେତେବେଳେ ଏ ଗଛରେ ଖଗଥିଲା ପୁଣି ଥିଲେ ଲୋକେ
ପୁଣି ଥିଲା ମୋ ଦେହରେ ପଉଷର ପଲାତ ମୂର୍ଚ୍ଛନା"

ଖଗ ସୂର୍ଯ୍ୟଙ୍କର ଉପସ୍ଥିତି ଓ ଦିନ ଓଳକ ସୂଚିତ କରେ । ସୂର୍ଯ୍ୟ ସ୍ଫୂର୍ତ୍ତି, ଶକ୍ତି ଓ ଉଦ୍ଦାମତାର ପ୍ରତୀକ । ଦିନ ମଧ୍ୟ ତାହା ହିଁ ସୂଚାଏ । ତେଣୁ 'ଖଗ'ର ଅର୍ଥ ସ୍ଫୂର୍ତ୍ତି, ଉଦ୍ଦାମତା ବା ଜୀବନ ( Liveliness ) ଓ 'ଲୋକେ'ର ଅର୍ଥ 'ପ୍ରାଣବନ୍ତ ମଣିଷ' । ଅର୍ଥାତ୍ ସେଇ ରୂପସୀ

ଯୁବଶରର ଛନ୍ଦାୟିତ ଗତିରେ କାବ୍ୟ-ପୁରୁଷର ଆଖପାଖରେ ରହୁଥିବା ଲୋକଙ୍କ ମନରେ ଆଲୋଡ଼ନ ସୃଷ୍ଟି ହୋଇଥିଲା । ସ୍ୱୟଂ କାବ୍ୟ-ପୁରୁଷ ମନ ଭିତରେ ବି ସେଇ ଛନ୍ଦର ପ୍ରତିଧ୍ୱନି ଶୁଭୁଥିଲା । ତା' ମନରେ ମୂର୍ଚ୍ଛନା ସୃଷ୍ଟି ହୋଇଥିଲା । କିନ୍ତୁ ସେ ମୂର୍ଚ୍ଛନା ସଙ୍ଗୀତର ଜିଦ୍ଧାମ ମୂର୍ଚ୍ଛନା ନୁହେଁ, 'ପଉଷର ପଳିତ ମୂର୍ଚ୍ଛନା' । ପଉଷ ମାସରେ ପୃଥିବୀ ପାଣ୍ଡୁର ବର୍ଣ୍ଣ ଧାରଣ କରେ । 'ପଉଷ' ସହିତ 'ପଳିତ' ଓ 'ମୂର୍ଚ୍ଛନା'ର ପ୍ରୟୋଗରୁ ଧରିନିଆଯାଇ ପାରେ ଯେ 'ସୁନାର ଝରଣା'ର 'ଝରିଯିବା' ଘଟଣାଟି ଘଟିଲା ବେଳେ କାବ୍ୟ ନାୟକ ଯୌବନ ଓ ପ୍ରୌଢ଼ତ୍ୱର ସୀମାରେଖାରେ ଅବତୀର୍ଣ୍ଣ ହୋଇସାରିଥିଲା ।

'ପଉଷର କୁହୁଡ଼ିରେ'ରୁ କବିତାର ଦ୍ୱିତୀୟ ସ୍ତବକର ଆରମ୍ଭ । ପଉଷ ଶୀତଋତୁର ଅନ୍ତର୍ଗତ । ଋତୁ ଚକ୍ରରେ ଶୀତ ପରେ ଆସେ ବସନ୍ତ । କିନ୍ତୁ ଆମର କାବ୍ୟ ପୁରୁଷ ଭାଗ୍ୟରେ ତା' ଜଟିନ । ଅନ୍ୟ ଭାବରେ କହିଲେ, ନିଜର ଈପ୍‌ସିତ ବସ୍ତୁକୁ ସେ ପାଇନ । ତା'ର ସାରା ଜୀବନ ପଉଷର ପାଣ୍ଡୁର କୁହୁଡ଼ି ଭିତରେ କଟିଛି । ଆଗେ 'ଏ ଗଳିରେ ଖରା' ଥିଲାବେଳେ ସେ 'ସୁନାର ଝରଣା'କୁ ଦେଖିପାରୁଥିଲା । କିନ୍ତୁ 'ପଉଷର କୁହୁଡ଼ି' 'ତାରା' ଓ 'ଜହ୍ନ'କୁ ତା' ଆଖିରୁ ଅନ୍ତର କରିଦେଲା । ଏଠି 'ତାରା' ଓ 'ଜହ୍ନ' ବି 'ସୁନାର ଝରଣା' ପରି କାବ୍ୟ-ନାୟିକା ପାଇଁ ବ୍ୟବହୃତ । ୨୨-୨୩ତମ ଧାଡ଼ି × × × × ତା' ଅକ୍ଷିରେ ଝିକିମିକି ତାରା ତା ଦେହରେ ଯେତେ ତେଜ "ଜହ୍ନ ଆଜି ତାରା ଆଲୁଅ"ରୁ ଏକଥା ସ୍ପଷ୍ଟ ବୁଝାପଡ଼େ । କୁହୁଡ଼ି ସାଧାରଣତଃ ଦୁନିଆର ସବୁକିଛି ଉପରେ ଏକ ପର୍ଦ୍ଦା ପକାଇ ଆଖିର ଅନ୍ତରାଳକୁ ଟାଣିନିଏ । "ପଉଷର କୁହୁଡ଼ି" ଏକ ବାଧାର ପ୍ରତୀକ

ଯାହାକି କାବ୍ୟ-ନାୟକକୁ କାବ୍ୟ-ପୁରୁଷଠୁ ଦୂରେଇ ନେଇ ମିଳନରେ ଅନ୍ତରାୟ ସୃଷ୍ଟି କରିଛି । କବିତାର ଚଉଦଟି ଅଂଶରେ 'ପରୁଷ' ଓ 'କୁହୁଡ଼ି' ଶବ୍ଦଦ୍ୱୟର ବାରମ୍ବାର ( 'ପରୁଷ' ଓ 'କୁହୁଡ଼ି' ଏକାଠି ୮ଥର, କେବଳ 'ପରୁଷ' ୨ଥର ଓ କେବଳ 'କୁହୁଡ଼ି' ଥରେ ) ପ୍ରୟୋଗ କରାଯାଇଛି । ଏଥିରୁ ଉକ୍ତ ବାଧା କାବ୍ୟ ପୁରୁଷ ହୃଦୟରେ କିପରି ଗଭୀର ରେଖାପାତ କରିଛି, ତା' ସହଜରେ ଅନୁମେୟ ।

ପ୍ରେୟସୀର ଦେହ ଦୂରେଇ ଗଲେ ବି ତା'ର ସ୍ମୃତି କାବ୍ୟ-ନାୟକର ହୃଦୟକୁ ଆବୋରି ବସିଛି । ସେଇ ସ୍ମୃତିକି ସମ୍ବଳ କରି ଜୀବନ କାଟିବାକୁ ସେ ସ୍ଥିର କରିଛି । ସମୟର ଗତି ସଙ୍ଗେ ତାଳ ଦେଇ ପରଟିଏ ଚୂର୍ଣ୍ଣରୂପ ଝଡ଼ିଗଲା ପରି ତା'ର ଆୟୁଷରୁ ଆସ୍ତେ କିନା ଖସି ପଡ଼ୁଛି ବର୍ଷଟିଏ । ଦେହ ଉପରେ ଜମି ଆସିଛି ପ୍ରୌଢ଼ତ୍ୱର ଧୂଳି ।

ବାସ୍ତବ ଜଗତରେ ସୁନାର ଝରଣା, ତାରା ଓ ଜହ୍ନ, ଏ ସବୁ ଦୁର୍ଲ୍ଲଭ । ତା ସତ୍ତ୍ୱେ ନାୟକ ସେସବୁ ହାସଲ କରିବାକୁ ଆପ୍ରାଣ ଚେଷ୍ଟା କରିଛି । ହେଲେ ସବୁ ଅକାରଣ । ନବମ ଧାଡ଼ିର 'କାମିଜର ରଫୁରେ ରଫୁରେ' ଉକ୍ତିଟି ଭିତରେ ନାୟକର ଚେଷ୍ଟାର ନିଷ୍ଠା ତଥା ଐକାନ୍ତିକତା ସହିତ ସ୍ୱପ୍ନର ବିପର୍ଯ୍ୟୟ ସୂଚିତ । ବିଫଳ ମନୋରଥ ହୋଇ ସେ ଦେହ ଓ ମନରେ ଭଗ୍ନ କ୍ଳାନ୍ତ ହୋଇ ଶୋଇ ପଡ଼ିଛି । ବ୍ୟର୍ଥତା ଓ ବିଫଳତା ଜନିତ ଦୁଃଖ ସବୁକୁ ଭୁଲିବାର ଉଦ୍ୟମ କରିଛି । କିନ୍ତୁ ''ସ୍ମୃତି ସବୁ କେବେ ନୁହେଁ ଫିଙ୍ଗିବାର'' । ବିଫଳତା ଓ ଦୁଃଖଭରା ସ୍ମୃତିରେ ବି ଗୋଟିଏ ସ୍ୱତନ୍ତ୍ର ପ୍ରକାର ଆନନ୍ଦ ରହିଥାଏ । ଏଇଥିପାଇଁ ଇମର୍ସନ୍ 'Delicious torment'ର ବ୍ୟବହାର କରିଛନ୍ତି ।

ସମସ୍ତ ବ୍ୟର୍ଥତା ମଧ୍ୟରେ, ନୈରାଶ୍ୟ ମଧ୍ୟରେ ମଣିଷ ଟିକେ ଆଶାକୁ ନେଇ ବଂଚେ । ପ୍ରେମରେ ବିଫଳ ହେଲା ପରେ ବି କାବ୍ୟ-ପୁରୁଷର ମନ ଏକଦମ ନିରାଶ ହୋଇଯାଇନି । ତା' ମନରେ ଏକ ସାମୟିକ ଆଶା ଉଙ୍କି ମାରିଛି, ସବୁ ବାଧା ବଂଧନକୁ ଅତିକ୍ରମ କରି ତା'ର ପ୍ରେମିକା ଅକସ୍ମାତ୍ ଲୁଗାଥାଳ-ଜହ୍ନ ଓ ଥୋପି ଥୋପି ତାରତାରି ଆଗରେ ଆସି ଉଭା ହେଇ ଯାଆନ୍ତା କି ! ସେ ହଠାତ୍ ଗୋପନ ଦକ୍ଷିଣାର ସ୍ପର୍ଶ ଅନୁଭବ କରନ୍ତା କି ! କିନ୍ତୁ

"ଉଜଷର କୁହୁଡ଼ିରେ ଜହ୍ନ ହଜେ ତାରା ହଜଯାଏ
ହସି ହସି ଝରିଯାଏ ସିମେଣ୍ଟର ଚଟାଣ ଉପରେ
ସୁନାର ଝରଣା ।"

ଏ କାବ୍ୟାଂଶଟି ଆପାତତଃ ପରସ୍ପର ବିରୋଧୀ ପରି ଲାଗେ । କାରଣ ପ୍ରଥମେ ନାୟିକାର ଦୂରେଇ ଯିବା କଥା ('ଜହ୍ନ ହଜେ ତାରା ହଜ ଯାଏ') କହି ପୁଣି ସେହି ଛନ୍ଦାୟିତ ଗତିରେ ଖୁଲିଯାଏ ('ହସି ହସି ଝରିଯାଏ × × × ସୁନାର ଝରଣା') କହିବା ଅସଂଗତ ମନେ ହୁଏ । ପ୍ରକୃତରେ କଥା ହଉଚି ଯେ ନାୟିକାର ଦେହ ନାୟକର ଆଖିର ପରିଧି ଭିତରୁ ଦୂରେଇ ଗଲେ ବି ତା'ର ସ୍ମୃତି ମନଭିତରୁ ହଜ ଯାଇନି । ଏଠି ସ୍ମରଣୀୟ ଯେ ୧୬-୧୭ତମ ଧାଡ଼ିର ଅର୍ଥ ୧ମ-୨ୟ ଧାଡ଼ିଠୁ ଅଲଗା । ୧ମ-୨ୟ ଧାଡ଼ିରେ ପ୍ରକୃତ ନାୟିକା ବିଷୟରେ କୁହାଯାଇଥିଲା ବେଳେ ୧୬-୧୭ତମ ଧାଡ଼ିରେ ତା'ର ସ୍ମୃତି ବିଷୟରେ କୁହାଯାଇଛି । ୩୦ତମ ଧାଡ଼ିଟି ବି ନାୟିକାର ସ୍ମୃତି ବିଷୟକ ଅର୍ଥ ପ୍ରକାଶ କରେ । ୧ମ ୨ୟ ଧାଡ଼ିରେ ଅତୀତ କାଳର କ୍ରିୟା (ଝରିଗଲା) ପ୍ରୟୋଗ କରାଯାଇ ୧୬ ୧୭ତମ ଓ ୩୦ତମ ଧାଡ଼ିରେ ବର୍ତ୍ତମାନ କାଳର

କ୍ରିୟା ( ଯଥା କ୍ରମେ 'ଝରିଯାଏ' ଓ 'ଯାଏ ଝରି ଝରି' ) ର ବ୍ୟବହାର ଆମ ଯୁକ୍ତିକ ବଳିଷ୍ଠ କରେ ।

ତା'ପରେ କାବ୍ୟ ସ୍ରଷ୍ଟା କଳ୍ପନାରେ ଦେଖିଛି ଯେ ନାୟିକା ପାଦରେ ଛନ୍ଦ. ଆଖିରେ ଝକମିକ ତାରା, ଦେହରେ ଜହ୍ନ ଓ ତାରା ଆଲୁଅର ଢେଉ ଓ ବେଣୀରେ ଭଙ୍ଗା ସପନର ଅନେକ ସ୍ୱପ୍ନ । ସେ ନବାଳ ହୋଇ ନାୟିକାର ଆଖିକୁ ଗୁହିଁଛି । ସେଥିରେ ପ୍ରତିଫଳିତ ହୋଇଛି ତା'ର ପ୍ରତିବିମ୍ବ । ଏଥିରୁ ନାୟକାଠାରେ ନାୟକର ଆତ୍ମା ବା ହୃଦୟ ସମର୍ପଣ ସୂଚିତ, କିନ୍ତୁ ଏ ସମର୍ପଣ ଗୋପ୍ୟ; କାହାରିକି ଏକଥା ଜଣା ନାହିଁ । ଏ ସମର୍ପଣ ସମ୍ପୂର୍ଣ୍ଣ ନିସ୍ୱାର୍ଥପର ଓ ଉଦ୍ଦେଶ୍ୟହୀନ ମଧ୍ୟ । ତେଣୁ 'ତା' ଭିତରେ ଆତ୍ମା ମୋର' ନିରାକାର ବା ନିର୍ଗୁଣ ହୋଇ ରହିଛି ବୋଲି ବୁଝାଯାଇଛି ।

କାବ୍ୟ ନାୟକର ଆଖିରୁ ଜ୍ୟୋତି ହଜିଗଲା ସମୟରେ ବି ତା' ମନରେ ନାୟିକାର ସ୍ମୃତି ଆଗପରି ଜୀବନ୍ତ ଓ ଉଜ୍ଜ୍ୱଳ ହୋଇ ରହିଛି । ଏବେ ସେ ଜଣେ ଆସ୍ଥାହତ ପଥିକ; କ୍ଲାନ୍ତ, ତୃଷାର୍ତ୍ତ ଓ ଦିଗ୍‌ଭ୍ରାନ୍ତ । ଝରଣାର କୂଳରେ ଅର୍ଥାତ୍ ନାୟିକାର ସ୍ମୃତିକୁ ଆବୋରି ବସି ସେ କ୍ଲାନ୍ତି ଓ ତୃଷା ନିବାରଣ ପାଇଁ ପାଣି ଖୋଜୁଛି; ଅନ୍ଧାରରୁ ମୁକ୍ତି ପାଇବାପାଇଁ ସ୍ୱପ୍ନ ଓ ଦୀପର ଆଲୋକ ଖୋଜୁଛି । ଏଠି ପାଣି, ସ୍ୱପ୍ନ ଓ ଦୀପର ଆଲୋକ ସବୁ ନାୟିକାର ପ୍ରତୀକରୂପେ ବ୍ୟବହୃତ ।

କବିତାର ଶେଷ ସ୍ତବକରେ ରହିଛି କାବ୍ୟ-ପୁରୁଷର ହତାଶାଭରା ଦୀର୍ଘଶ୍ୱାସ । ଆଜି ସେ ତା'ର ପଥହୁଡ଼ା ହେଲାଣି । କିନ୍ତୁ ପ୍ରେମିକାର ସ୍ମୃତି ତା'ର ହୃଦୟକୁ ଆପ୍ଲୁତ କରିଛି ।

ଶେଷ ଦୁ’ ଧାଡ଼ି ( ୩୩-୩୪ତମ ଧାଡ଼ି )ରେ ନାୟିକାପ୍ରତି ନାୟକର ଅନୁରାଗର ଐକାନ୍ତିକତା ଓ ଏକନିଷ୍ଠତା ପରିସ୍ଫୁଟ । ପ୍ରେମରେ ଅସଫଳ ହେଲେ ବି ସେଇ ବ୍ୟର୍ଥତାକୁ ସ୍ୱୀକାର କରିବାରେ ତା’ର କୁଣ୍ଠା ନାହିଁ, ଦ୍ୱିଧା ନାହିଁ । ବରଂ ନିଜର ଜୀର୍ଣ ତନୁକୁ ପଳ ପଳ କରି ଜାଳି ଉତ୍ତର ବୟସରେ ସେ ପ୍ରେମର ଜୟଗାନ କରି ଚାଲିଛି —

"ମୁଁ ତାକୁ ପାଇଛି ଭଲ ବ୍ୟର୍ଥତା ମୋ ପୁଞ୍ଜିଭୂତ କରି
ଜୀର୍ଣ ମୋର ଅବଶେଷ ଜାଳିପୋଡ଼ି ପଳ୍ପଳ ମ୍ଳାନ ଗୋଧୂଳିରେ ।"

— ୩ —

ପ୍ରାୟ ସବୁ କବିତାରେ ଗୁରୁପ୍ରସାଦଙ୍କ କାବ୍ୟ-ପୁରୁଷମାନେ ପ୍ରେମରେ ଅସଫଳ ଓ ବ୍ୟର୍ଥ । କିନ୍ତୁ ଆଲୋଚ୍ୟ କବିତାରେ ପ୍ରେମିକା ଓ ପ୍ରେମପ୍ରତି କାବ୍ୟପୁରୁଷର ଯୋଉ ଏକନିଷ୍ଠତା ରହିଛି, ତା’ ଅନ୍ୟତ୍ର ବିରଳ ।

**ପଞ୍ଚାନନ ମହାନ୍ତି**



# ପ୍ରିୟ ବାନ୍ଧବୀ

ଦଶଦିଗନ୍ତ କୁହୁଡ଼ି ଆସେ ସ୍ୱପ୍ନ ପରି ଘାରି ଧାନ କ୍ଷେତ
ନିର୍ଜନ ବାଲିର ତଟରେ ନଦୀ ଯେବେ କ୍ଳାନ୍ତ ହୋଇ ନଇଁ
ହେମନ୍ତ ରାତିର ଆୟୁ କ୍ରମେ କ୍ରମେ କ୍ଷୟ ହୋଇ ଆସେ
ଯେତେବେଳେ ନଈ ପଠା ଶେଷଥର କରି ଲେଉଟାଏ ।

ସେତେବେଳେ କେତେଥର ତୁମର ମୁଁ ପାଇଛି ବା ଦେଖା
ଚଉଷ୍ଠି ନଈର ତୁଠେ ଘର ବେଣୀ ଫିଟିଗଲାବେଳେ
ତୁମର ଅସ୍ପଷ୍ଟ ଗୀତ ତୁଠେ ତୁଠେ ଛପିଗଲାବେଳେ
ସେତେବେଳେ ତୁମର ମୁଁ ଦେଖିଛି ବା ସନ୍ଦେହର ରେଖା ।

ସେ ହେଲା ପୁରୁଣା କଥା ଯେତେବେଳେ ଅଳ୍ପ ଥିଲା ଦିନ
ଆଉ ଥିଲା ଆକାଶରେ ରକ୍ତସ୍ରାବ ପଶ୍ଚିମ ସନ୍ଧ୍ୟାର
ତୁମେ ପୁଣି ଯାଇଥିଲ କାଲିତର ପାରି ହୋଇ ନଈ
ଆଜି ପିଇ ଅସମ୍ବୃତ ଅସଂଯତ ଭ୍ରାନ୍ତ ସନ୍ଧାନ ।

ଧାନ କ୍ଷେତ ନଇଁପଡ଼େ ଶୀତଋତୁ ବୁଢ଼ା ହୋଇ ଆସେ
ନିଛାଟିଆ ଆକାଶରେ ତାବୁ ମାଣ୍ଡି ପକ୍ଷୀର କାକଳି
ତୁମେ ଆଉ ଆସିନାହଁ ଏ ବାଟରେ ଥରେ ହେଲେ ଭୁଲି
ନିଶବ୍ଦ କାଲିତରେ ଯେବେ ଯାଏ ପବନ ଗୁମର ।

ତୁମେ ଆଜି ଥରେ ଆସ ଯଦିଚ ବା ସବୁ ମୂର୍ଚ୍ଛାହତ
ଏଣୁ ଗଳ୍ପ କଣ ଲାଭ ଆଉ ତେଣୁ ଆଜି କାଳିତର
ଆକାଶରେ ଜହ୍ନ ଯଦି କ୍ଲାନ୍ତ ପୁଣି ଆବଶ୍ୟକହୀନ
ମୁଁ ତୁମର ଅପେକ୍ଷାରେ ପ୍ରଣ୍ଣମସ୍ତୁ ପୁଣି ସନ୍ଧାନ ।

ତୁମେ ଯଦି ମିଛ କଥା, ତୁମେ ଯଦି ବନ୍ଦ ଦୋକାନରେ
ଆଧୁନିକ ପ୍ରେମ ଗଳ୍ପ, ତୁମେ ଯଦି ରେଡ଼ିଓ ଖବର
ତୁମେ ଯଦି ଫିଲ୍ମ ଗୀତ ଥାର୍ଡକ୍ଲାସ ରେଲ ଟିକଟ ଘର
ତୁମେ ଯଦି ବଜାରରେ ଲୁଗା ଚିନି ବ୍ଲେକ କାରବାର ···

ମୁଁ ପଢ଼େ ଖବର ସବୁ, ବୁଢ଼ା ହୋଇଯାଏ ଶୀତଋତୁ
ରଙ୍ଗ ସବୁ ଛାଡ଼ିଲାଣି ଜେବେଠାରୁ ଛିଣ୍ଡା ଲୁଗା ଭଙ୍ଗା କୋଠାଘର

ଧାନ କ୍ଷେତ କାହିଁ କେଉଁ ସୁଦୂର ଟିକେ କେଉଁ ଅନ୍ତରର
ଏଠି ମୋର ସ୍ୱରପାଖେ ବାଲିଚର ଖାଲି ବାଲିଚର ।

ବାଲିରେ ମୁଁ ବୁଲିଯାଏ ସନ୍ଧ୍ୟାବେଳେ ଆଜିକାଲି ବୈଶାଖୀ ସନ୍ଧ୍ୟାରେ
ଏଠୁ ବାଲି ଚରେ ଚରେ ମୁଁ ଦେଖେ ବହୁତ ମେଘ ନାଲି ନେଳି
ବହୁତ ରଙ୍ଗର
ନଈଟିଆ ବେଳେବେଳେ ଦୀର୍ଘଶ୍ୱାସ ଜମି ଆସେ ଆଉ ସବୁ ସ୍ମୃତି
ହୋଇ ଆସେ
ଏ ବାଲିରେ ସବୁ ସ୍ମୃତି ଦୁର୍ବି ହୋଇ ହୁଏ ଏକାକାର ।

ତୁମେ ଆସ ଆଜି ଆସ ମଲ୍ଲିକା ଚାଲିଛି କେଉଁଠୁ
ବନାରସୀ ସିଲ୍କ ପିନ୍ଧି ସେ ଦେହରେ ହଳଦୀ ଲଗାଇ
ଚମ୍ପାଫୁଲ ବେଣୀମୂଳେ, ଶଙ୍ଖ ଲେଖି ସ୍ମୃତି ଯୋଡ଼କରେ
ତୁମେ ଆସ ଆଜି ଆସ ମାଟିରୁ ବା ଆକାଶ ଉପରୁ ।

ଯେତେ ବାଲି କୂତ ହୁଏ ଯେତେ ଦେହ ଜଳପୋଡ଼ ଯାଏ
ତୁମେ ଆସ ତା ଭିତରୁ ଯେତେ ସଦା ଅଭଦ୍ର ଅଶ୍ଳୀଳ
ତୁମର ଓଠରୁ ଢଳେ ଫୋପ ଫୋପା ଝରଇ ଝରଇ
ତୁମେ ଆସ ସଞ୍ଚିତ ବା ପୁଞ୍ଜିଭୂତ ଯେତେ ବ୍ୟଭିଚାର,

ରାତି ଧୀରେ ଗାଢ଼ ହୁଏ ଦୂରର ଏ ଝାଉଁବଣଆଢ଼େ
ତେର ସବୁ ଶେଷ ଦିନଏ ପାଖେପଣେ ଏ ବାଲିର ସ୍ମୃତି ତନ୍ତ୍ର ବାଦ
ଏ ନଈର ବାଲିଚରେ ଜନ୍ମ ନାହିଁ ତାର ନାହିଁ ଯେବେ
ମୁଁ ଆଣୁଛି ତୁମ ପାଖେ ମାଟିର ମୋ ଜନ୍ମାନ୍ତର ବାଦ ।

ତୁମେ ଆଜି ଏଠି ଅବା ବାରଣସୀ କାଶୀ ନଗରରେ
ଭଜନରେ ତୁମର ଗାନ, କମ୍ପା ମେଖଳ ନଈଟିଆ ଆରସି ସାମ୍ନାରେ

ମୁଁ ହିଁରେ ତୁମର ସ୍ୱପ୍ନ, କିମ୍ବା ଯେତେବେ ଚେତନାର ସୀମା ପାରି ହୋଇ
ନଇରେ ପଡ଼ିବ ଶେଇ ତନ୍ଦ୍ରାହତ କେଉଁ ଅସ୍ତ ବାଂସ୍ତ ଭିତରେ ।

ମୁଁ ତୁମକୁ ପ୍ରଥମେ ଦେଖି ଆଜଠାରୁ କେତେ ବର୍ଷ ପରେ
ଅପନ୍ତ୍ରବ ସମସ୍ତିର ଗୁଣ୍ଡିତକେ କୁଡ଼ ଖୁଡ଼ ଉଚ୍ଛିଷ୍ଟ ଉପରେ
ହାଡ଼ରୁ ତୁମର ଚମଡ଼ା ମାଂସ ଖସି, ଖୋଳ ହୋଇ ଆଖି ହୁଏ ଗାଡ଼
ତା ଭିତରେ ଲମ୍ବ ପାଏ ପ୍ରାଣ ମୋର ଆତ୍ମା ମୋର ଆଉ ମୋର
ମାଟିର ଆକାର ।

ରାସ୍ତାର ଉପରେ ଯାଏ ଗୁଳି ନେଇଁ କଞ୍ଚାବର୍ଣ୍ଣ ବେଣ୍ଟଲିହା ମୁଣ୍ଡେ ।
ଗୁଳିଯାଏ ଛଟି ଛଟି କାଠପୋଡ଼ା ବାଲିଚରେ, କିମ୍ବା ପୁଷ୍ପ ସମୁଦ୍ର କୂଳରେ
ଗନ୍ଧ ଯାଏ ଝୁଲି ଝୁଲି ଆମର ଏ ଦୋକାନ ଜନାରେ
ସ୍ୱପ୍ନଯାଏ ଉଙ୍କିମାରି ଗଞ୍ଜ ଗଳି କୋଠା ମନ୍ଦିରକେ ।

ମୁଁ ତୁମକୁ ଭଲପାଏ ଚନ୍ଦ୍ରକାନ୍ତ ଭଲ ପାଇଥିଲା
ସିଂହଳ ଦ୍ୱୀପର ସ୍ୱପ୍ନ ମୁଁ ପାଇଛି କିଣିବାକୁ ଯେବେ
ଲବଙ୍ଗବଣର କଥା, କିମ୍ବା ବ୍ୟଥା କଦମ୍ବ କଡ଼ର
ମୋ ଆଖିରେ ଅବାସ୍ତବ ପାଲଟିଛି ଏ ସହର ଭେବେ ।

ଲାବଣ୍ୟବତୀରୁ ତୁମେ ଆସି ଅବା ରସକଲ୍ଲୋଳରୁ
କୋଣାର୍କ ଜାନ୍ହୁରୁ ଅବା ସିନେମାର ପରଦା ଭିତରୁ
ମୁଁ ତୁମକୁ ଭଲ ପାଏ ଚନ୍ଦ୍ରକାନ୍ତ ଭଲ ପାଇଥିଲା
ମୋ ପାଖେ ସିଂହଳ ଦ୍ୱୀପ ଯାତ୍ରା କିନ୍ତୁ ଅସମ୍ଭବ ହୁଏ ।

ତୁମେ ଯେବେ ଆସ ଆଜ ନସ୍ତୁଟିଆ ଏ ଜନସ୍ଥାନ
କାଳଚର ଖୋଳ ଖୋଳ ଚେର ଯେତେ ଘଣେ ଉତରକୁ
ଆଜ ଗତ କୋହ ହୋଇ ମିଶିଯାଏ ବସାଠ ଶୂନ୍ୟରେ
ତୁମେ ତେବେ ଅ ସ ଆଜ ବାସ୍ତବ ବା ସ୍ବପ୍ନ ଆକାରରେ ।

ମୁଁ ତୁମକୁ ଭଲପାଏ ତୁମେ ଦେବ ଶଠିକ ଜବାବ
ତୁମେ ପୁଣି ଫେରିବ ବା ଏକ୍ସ ରେଲ ଲାଇନ କାଠରେ
ତୁମେ ପୁଣି ଦେଖାଦେବ ନସ୍ତୁଟିଆ କାଳ ଚରେ ଚରେ
କେଉଁ ଅସ୍ତ ଜହ୍ନତଳେ ଅବା କେଉଁ ଦବର୍ଣ୍ଣ ସନ୍ଧ୍ୟାରେ ।

ତୁମରି କାନ୍ତରେ ମୋର ଓଠ ଯିବ ଛୁଇଁ ଭିନ୍ନ ହୋଇ
ତୁମର ସ୍ପର୍ଶରେ ଯିବ ଦଗ୍ଧହୋଇ କାଳଚର ନଗନ ନଗ୍ନ
ତୁମର ଦେହର ରକ୍ତ ପାଣି ଫାଟି ଥଣ୍ଡା ହୋଇଯିବ
ତୁମର ଉଦରେ ମୋର ଆତ୍ମା ଯିବ ନଷ୍ଟ ହିଁ ମିଳାଇ ।

ମୁଁ ତୁମକୁ ଭଲପାଏ ପ୍ରାଣପାତ କରି ମୋର ଦେହ ମୋର ବିସର୍ଜନ
କରି
ଆଜ ରାତ ଅଣ୍ଡାଡ଼ିଏ ଯାକ ହୋଇଆସେ ଧର୍‌ବଳୟ
ଉତ୍ପିସ୍ଥାନ ତୁମେ ମୋର, ଆଜି ମୋର ଜୀର୍ଣ୍ଣ ସତ୍ତ୍ଵ ପୋଡି
ଅନ୍ଧକାର ଯୁକ୍ତସ୍ଥାନ ମାଡ଼ିବସେ ଦୁର୍ନିବାର ସମସ୍ତ ସମସ୍ତ ।



କବି ଗୁରୁପ୍ରସାଦଙ୍କ 'ପ୍ରିୟ ବାନ୍ଧବୀ' କବିତା ପଢ଼ି ସାରିଲା ପରେ ଯେଉଁ ଧାରଣା ଆସେ ସେଗୁଡ଼ିକୁ ନିମ୍ନୋକ୍ତ ପାଞ୍ଚଟି ପର୍ଯ୍ୟାୟରେ ଆଲୋଚନା କରାଯାଇପାରେ :

(କ) 'ପ୍ରିୟ ବାନ୍ଧବୀ' କବିତା ସହିତ ଗୁରୁବାବୁଙ୍କ 'ସମୁଦ୍ରସ୍ନାନ' ବହିର ଅଧିକାଂଶ କବିତା ସମ୍ପର୍କିତ । ଏ କବିତାକୁ ପୃଥକ୍ କରି ବିଚାର କରିବା ପ୍ରାୟ ଅସମ୍ଭବ ।

(ଖ) 'ପ୍ରିୟ ବାନ୍ଧବୀ'ରୁ ମିଳୁଥିବା ବ୍ୟଞ୍ଜନା, ପରୋକ୍ଷତା ଓ ରୂପକ ପ୍ରଭୃତି ମାଧ୍ୟମରେ ଯେଉଁ ପ୍ରେମିକତା ପ୍ରକାଶ ପାଇଛି ତାହା ତାଙ୍କର ପୂର୍ବସୂରି ମାନସିଂହ, ଗଡ଼ନାୟକ, ବିନୋଦ ନାୟକ ଓ ସଚ୍ଚି ରାଉତରାୟଙ୍କ ପ୍ରେମିକତାଠାରୁ ସ୍ୱତନ୍ତ୍ର । ନବଜ ଦେହଧର୍ମିତା ଏହାର ସେତିକି ବିଶେଷତ୍ୱ, ପ୍ରକୃତି ସହିତ ଏକାତ୍ମୀୟତା, ଅଧୁନିକ ବୁଦ୍ଧିଜୀବୀର ବହୁମୁଖୀ ମାନସିକ ଅସମାନତା ଅଥଚ ବହୁ ବ୍ୟାପକ ବୌଦ୍ଧିକ ଆୟତନ ପ୍ରଭୃତି ମଧ୍ୟ ଏହାର ସେତିକି ଉତ୍କର୍ଷ ।

(ଗ) 'ପ୍ରିୟ ବାନ୍ଧବୀ'ରେ କବିଙ୍କର କାବ୍ୟଚେତ୍ନା ମୁଖ୍ୟତଃ ଇଲିୟଟ୍‌ଙ୍କ ପୋଏଟିକ୍‌ସ ଦ୍ୱାରା ପ୍ରଭାବିତ ।

(ଘ) ଗୁରୁବାବୁଙ୍କ କବିତାରେ ପ୍ରକୃତି ବର୍ଣ୍ଣନା, ଏହାର କାବ୍ୟ ପୁରୁଷର ବ୍ୟକ୍ତିତ୍ୱ ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ, ଅର୍ଥାତ୍ ପ୍ରକୃତି ବର୍ଣ୍ଣନାକୁ କବିତାର ମୂଳ ଚେତନାଠାରୁ ବିଚ୍ଛିନ୍ନ କରାଯାଇ ପାରିବ ନାହିଁ ।

(ଙ) କବିତାରେ ଆଙ୍ଗିକ ଦୃଷ୍ଟିରୁ ମାନସିଂହ, ଗଡ଼ନାୟକ ଓ ସଚ୍ଚି ରାଉତରାୟଙ୍କ କାବ୍ୟଶୈଳୀର ପରମ୍ପରା ଭାଂଗି ଗୁରୁବାବୁ

ଯେଉଁ ନୂଆ ବାଗ୍‌ଧାରା ଓ ଆଙ୍ଗିକ ପ୍ରଚଳନ କରିଛନ୍ତି, ସେ ସବୁ ତାଙ୍କର ପରବର୍ତ୍ତୀ ବହୁ କବିଙ୍କଦ୍ୱାରା ଏ ପର୍ଯ୍ୟନ୍ତ ମଧ୍ୟ ଅନୁସୃତ ହେଉଛି ।

ଏହି କବିତାର ଆରମ୍ଭ ପ୍ରକୃତି ବର୍ଣ୍ଣନାରୁ । ପ୍ରଥମ ପାଞ୍ଚଟି ପାରାଗ୍ରାଫ୍‌ର ଗଠନ ମୁଖ୍ୟତଃ ରୋମାଣ୍ଟିକ୍ ଗଠନ ବୋଲି ପ୍ରଥମ ପଠନରେ ମନେହୁଏ । କିନ୍ତୁ ଏହି ଆପାତ ରୋମାଣ୍ଟିକ୍ ଭଙ୍ଗୀ ଅନ୍ତ-ରାଳରେ ବୁଦ୍ଧିଜୀବୀ ପ୍ରେମିକ-ମାନସର ଅସ୍ଥିର-ମନା ବିଶ୍ଳେଷଣ ପ୍ରବଣତା, ସନ୍ଦେହ, ସିନିସିଜମ୍, ଅତୀତ ସ୍ମୃତିର ରୋମନ୍ଥନ ଓ ଅନୁ-ପସ୍ଥିତା ବାନ୍ଧବୀଙ୍କୁ ପୁଣିଥରେ ନିବିଡ଼ ଭାବେ ପାଇବାର ଆବେଗ ଲକ୍ଷ୍ୟ କରାଯାଇପାରେ । କିନ୍ତୁ ସମାନ ଭାବରେ ଏହି ଆବେଗ ମଧ୍ୟ ତାଙ୍କର 'ଶରତ ଋତୁରେ ଜହ୍ନ', 'ଚିଠି', 'ନିହତ ଗୋଧୂଳି', 'ସନେଟ-ଏକ' 'ଦୁଇ' 'ତିନି' 'ଚାରି' 'ପାଞ୍ଚ' ଓ 'ନଅ'ରେ ପ୍ରତିଫଳିତ ।

ଏକାବେଳେକେ ରୋମାଣ୍ଟିକ୍ ହୃଦୟାବେଗ ସହିତ ତୀକ୍ଷ୍ଣ ଓ ସ୍ପଷ୍ଟ ଆଧୁନିକ ଚେତନାର ସମନ୍ୱୟ, ପୁଣି ତାତ୍ପର୍ଯ୍ୟପୂର୍ଣ୍ଣ ବ୍ୟଞ୍ଜନା, ପ୍ରଥମ ପୁରୁଷର ସଂଳାପ ଆଇଁ ସୂକ୍ଷ୍ମ ପରୋକ୍ଷତା (ଆଲ୍ୟୁଜନ), ରୂପକ (ଆଲିଗୋରି) ଏବଂ ସର୍ବୋପରି ଏକ ନୂଆ ଦୃଷ୍ଟିକୋଣ ଫଳରେ ଗୁରୁପ୍ରସାଦଙ୍କ ପ୍ରେମିକତା ଅନ୍ୟାନ୍ୟ ପୂର୍ବସୂରୀମାନଙ୍କର ପ୍ରେମିକତାଠାରୁ ସ୍ୱତନ୍ତ୍ର ବୋଲି ସ୍ୱତଃ ଜଣାପଡୁଛି । 'ତୁମର ଅସ୍ପଷ୍ଟ ଗ୍ରୀବା ତୁଟେ ତୁଟେ ଛପି ଗଲାବେଳେ/ସେତେବେଳେ ମୁଁ ଦେଖିଛି ବା ସନ୍ଦେହରେ ଦେଖା' ଧାଡ଼ି ଦୁଇଟିର ଅର୍ଥ—ତୁମେ ଅନ୍ୟମାନଙ୍କ ମେଳରେ ଥିଲାବେଳେ ତୁମକୁ ଦେଖି ତୁମେ ନା ଆଉ କିଏ ଏ ସନ୍ଦେ-ହରେ ମୁଁ ପଡ଼ୁଛି । 'ସନ୍ଦେହରେ ଦେଖା'—ଏହି ଖଣ୍ଡ ବାକ୍ୟଟିର

ସୂକ୍ଷ୍ମପ୍ରିୟତା ଏଥିପାଇଁ ସଂଧୃଷ୍ଟ। ସବୁ ପ୍ରେମିକତା ପରି କବିଙ୍କର ପ୍ରେମିକତା ଅତୃପ୍ତମନ, ବିଦଗ୍ଧ ଅଥଚ ଅନୁଭବ-ଗନ୍ଧି'ତ। କିନ୍ତୁ ଦୂର ଓ ନିକଟ, ଅତୀତ ଓ ବର୍ତ୍ତମାନ, ଦୃଶ୍ୟ ଓ ଅଦୃଶ୍ୟର ବସ୍ତୁ ବିଚିତ୍ର ଓ ପରସ୍ପର ବିରୋଧି ଅନୁଭୂତି ତଥା ସଣ୍ଟରର ରୂପକରେ କବିଙ୍କର ଦୁର୍ବିରୋଗ୍ୟ ମନ ବସ୍ତୁ ବିମ୍ବିତ :

ତୁମେ ଯଦି ମିଛକଥା, ତୁମେ ଯଦି କଳ୍ପ ଦୋକାନରେ
ଆଧୁନିକ ପ୍ରେମ ଗଳ୍ପ, ତୁମେ ଯଦି ରେଡ଼ିଓ ଖବର
ତୁମେ ଯଦି ଫିଲ୍ମଗୀତ ଥାର୍ଡ଼କ୍ଲାସ ରେଲଟିକଟ ଘର
ତୁମେ ଯଦି ବଜାରରେ ଲୁଗା ଚିନି ଶେୟାର କାରବାର

ଏ ଧାଡ଼ି ଗୁଡ଼ିକରେ ପ୍ରେମିକାର ଚେତନା ବଂକ୍ତି-ନିରପେକ୍ଷତା ଲାଭ କରିଛି। ବସ୍ତୁ ବର୍ଣ୍ଣର ସମନ୍ୱିତ ସୌଷ୍ଠବରେ ଭାବବୋଧ ତଥା ଅଭିଜ୍ଞତାର ପୃଥକ୍ ପୃଥକ୍ ଅନୁସଙ୍ଗ ଗୁଡ଼ିକ ତାଙ୍କ ଲେଖାରେ ପର୍ଯ୍ୟାପ୍ତ। ଏଠାରେ ପ୍ରେମିକା ବା ତତ୍‌ସମଜାତୀୟା ବାନ୍ଧବୀମାନଙ୍କୁ, ସବୁ କାରଣ ଓ ଅକାରଣର ମୂଳ ଉତ୍ସ ଭାବରେ କେବଳ ଯେ ଚିହ୍ନିତ କରାଯାଇଛି ତା ନୁହେଁ, କବି ମନର ବସ୍ତୁବିଧ ଅଭିଜ୍ଞତା ମଧ୍ୟରେ ପରସ୍ପର ଖାପଛଡ଼ା ଘଟଣାବହୁଳତା, କାନ୍ତିବୀ ସମ୍ବନ୍ଧୀ ଆଳାପ ଆଲୋଚନା, ରେଡ଼ିଓରେ ସିନେମାଗୀତଠାରୁ ଆରମ୍ଭକରି, ବଜାରରେ ଚିନି ଓ ଲୁଗାର ଶେୟାର କାରବାର ପର୍ଯ୍ୟନ୍ତ ପ୍ରତ୍ୟେକ ଘଟଣା, ଚିନ୍ତା ଓ ଚେତନା ନେପଥ୍ୟରେ ଜଣେ ନା ଜଣେ ନାୟିକା ପ୍ରଚ୍ଛନ୍ନ— ସେ ସବୁର ଆଭାସ ଓ ଇଙ୍ଗିତ ଏଠାରେ ସ୍ପଷ୍ଟ।

ସବୁ ପ୍ରେମିକ କବିଙ୍କ ଭଳି ସେ ମଧ୍ୟ ନିଜ ପ୍ରେମିକା ସହିତ ପ୍ରତ୍ୟକ୍ଷ ନିବିଡ଼ ସଯୋଗ ପ୍ରବଳଭାବେ ଆଶା କରିଛନ୍ତି। ତେଣୁ ତାଙ୍କ ଭାଷାରେ :

'ତୁମେ ଆସ ଆଜ ଆସ ମିଲ ଲୁଗା·········
·········ପୁଞ୍ଜ ଭୁତ ଯେତେ ବ୍ୟଭିଚାର ।'

ମାନସିଂହ, ଗଡ଼ନାୟକ ପ୍ରଭୃତିଙ୍କ ପ୍ରେମିକତାଠାରୁ ଏହା ଅନେକାଂଶରେ ଭିନ୍ନ; ନିମ୍ନ ଦୃଷ୍ଟାନ୍ତଗୁଡ଼ିକ ଏହି ଦୃଷ୍ଟିରୁ ଉଲ୍ଲେଖଯୋଗ୍ୟ ।

କହୁଚକେ ଚୁହିଁ ଅଭିସାର କର ଏଠାବେ
ବାସକସଜ୍ଜା ରହିବ ମୁଁ ସାରା ଯାମିନୀ
ଆସ ଚକେ ଆସିବ କବଣ କୁସୁମ-ପରାଗେ
ଉଦ୍‌ବେଳ କରି ହୃଦୟ ଏ, ବର-କାମିନୀ
('ପ୍ରଣୟୀ'—ମାୟାଧର ମାନସିଂହ)

''ଚନ୍ଦନ କରିଦଅ ପ୍ରତି ଚରୁ ଭୂମେ ଟୋ
ନନ୍ଦନ ଖେରିଦଅ ତୃତି ମରୁଭୂମେ ଗୋ
ଦିଅ ତବ ଆଶ୍ଳେଷ ଦିଅ ତବ ପରଶ
କରି-ଜୀବନ ଏ ମମ ହେଉ ନବ ସରସ ।
(—'ବସନ୍ତ ସଖୀ', ରାଧାମୋହନ ଗଡ଼ନାୟକ)

ହେ ସଖି । ତୁମର ପ୍ରୀତି
ପଥେ ପଥେ ଫୁଲ ହୋଇ ଆହ୍ୱାନ ଜଣାଏ
ଦେହାଶି ନାଶିର ଚକ୍ଷେ ଯାଏ ମୂର୍ଚ୍ଛି
ତୁମର କଟାକ୍ଷ
ତୁମର ଷୋଡ଼ଶୀ-ଦେହ-ଗନ୍ଧ ମିଳେ
ନୂତନ ଶସ୍ୟରେ ।
('ହୀରକ ସ୍ୱପ୍ନ'—ବିନୋଦ ଚନ୍ଦ୍ର ନାୟକ)

ସହସ୍ର ଫାଲ୍‌ଗୁନ ଥିଲା ତୁମର ଆଖିରେ
ସହସ୍ର କହ୍ଲାର ହସ ଥିଲା ତୁମ ଓଠରେ ।
ତଥାପି ମୁଁ ଭାବୁଥିଲି ପିଇସାରିଛି ସବୁ ରସ
ପଡ଼ି ରହିଛି ଶୂନ୍ୟ କଳସ ।
ତୃପ୍ତିକର ଶୁଷ୍କ ମରୁଭୂମି—
ଭାବେ ଯେପରି ପିଇ ସାରିଛି ଦକ୍ଷିଣ ସାଗରର
ସବୁ ମୌସୁମୀ
ଅତିଭୋଜନ ନିଶାରେ
ଆଜି କହେ ମୁଁ ନିଜକୁ ନିଜେ ଡାକି
ସବୁ ଶରତଃ ଫାଙ୍କି
ଦୀର୍ଘ ଯୁଗର ବିଚ୍ଛେଦ, ଅବସାଦ
କ'ଣ ତୁମର ପ୍ରେମର ଅନୁବାଦ ?

( 'ସ୍ମରଣୀୟାସୁ': ସଚ୍ଚି ରାଉତରାୟ )

ଉପରୋକ୍ତ ସମସ୍ତ କବିତା ନିଛକ ଭାବେ ରୋମାଣ୍ଟିକ୍ କବିତା । କବିର ବ୍ୟକ୍ତିତ୍ୱ, ବ୍ୟକ୍ତିଗତ ପ୍ରେମିକା-କେନ୍ଦ୍ରିକ ଭାବନା ଏଠାରେ ମୁଖ୍ୟ । ଅନୁଭୂତିରେ ବହୁମୁଖୀତାର ଅଭାବ, ବିଦ୍ୱତ୍ତା, ବୌଦ୍ଧିକତା ଓ ଭାବବୋଧର ଗଭୀର ସମନ୍ୱୟତାର ଅଭାବ, ସର୍ବୋପରି ଆକାଶ-ପାତାଳ, ଅତୀତ-ବର୍ତ୍ତମାନ, ସସୀମ ଓ ଅସୀମର ଦୁରନ୍ତ ବ୍ୟବଧାନକୁ ଯୋଡ଼ି ପ୍ରକୃତିର ସାଯୁଜ୍ୟ, ରୂପକଳ୍ପ ଭିତରେ ଏହି କବିମାନେ ସେମାନଙ୍କର ପ୍ରେମିକତାକୁ ଆଧୁନିକ ପ୍ରେମିକତାରେ ପର୍ଯ୍ୟବସିତ କରି ପାରି ନାହାନ୍ତି । ସୁତରାଂ ଗୁରୁବାବୁ ଏହିକାରଣରୁ ପୂର୍ବବର୍ତ୍ତୀ କବିମାନଙ୍କଠାରୁ ପୃଥକ । ତାଙ୍କର ବାନ୍ଧବୀ ତାଙ୍କର

ଦୈନନ୍ଦିନ ଚିନ୍ତନ, ଚେତନ, ଜ୍ଞାନ, କର୍ମ, ଅଭିଜ୍ଞତା, ଦର୍ଶନ ତଥା ସୌନ୍ଦର୍ଯ୍ୟବୋଧ ଭିତରେ, ପ୍ରବଳ ଭାବରେ ବଞ୍ଚି ରହିଛି । ବଞ୍ଚି ରହିଛି ପୁଣି ରୋମାଣ୍ଟିକ କବିମାନଙ୍କ ଭଳି ଗୁରୁପ୍ରସାଦଙ୍କ ପ୍ରାଣାବେଗ ମଧ୍ୟରେ । କବି ଜୀବନ ବିଚାର ଅଭିବ୍ୟକ୍ତି, ଐଶ୍ୱର୍ଯ୍ୟ, କଳ୍ପନା ଷପ୍ରିସ୍ପୃହତା, ଛନ୍ଦ, ସ୍ୱପ୍ନଭଙ୍ଗ, ଅନ୍ତର୍ଦ୍ୱନ୍ଦ୍ୱ ସର୍ବୋପରି ସମସ୍ତ ଚେତନା ଭିତରେ ଅନ୍ତର୍ବାହିତ । କବି ସମସ୍ତର ମନୁଷ୍ୟତ୍ୱ ହେଉଛି ତା ନିଜର Style । ତା'ର ପ୍ରେମିକତା, ତାର ଆତ୍ମିକ ଗମ୍ଭୀରତା ଅତି ବସ୍ତୁନିଷ୍ଠ ।

ଏହା ପରେ କବିତାର ବେଦଧର୍ମୀ ଦିଗ ସମ୍ବନ୍ଧରେ ଆଲୋଚନା କରାଯାଉ । ଡ଼ଃ ମାୟାଧର ମାନସିଂହ ତାଙ୍କର 'History of Oriya Literature'ରେ ଗୁରୁବାବୁଙ୍କୁ ଏହି ପାଇଁ ତୀବ୍ର ସମାଲୋଚନାରେ ମୁମୂର୍ଷୁ କରିଛନ୍ତି । (ପୃ-୨୫୮-୨୬୧, ପ୍ରକାଶକ : ସାହିତ୍ୟ ଏକାଡେମୀ, ନୂଆ ଦିଲ୍ଲୀ ) କିନ୍ତୁ ଖୋଦ୍ ମାନସିଂହଙ୍କର ମଧ୍ୟ ବେଦଧର୍ମୀ କବିତା ଅଛି : "ଲିଭିଅ ଯେ ଦୀପଶିଖା ଜଳୁଛି ତାହାରେ/ତବ ରୂପଶିଖାଜଳୁ ଘନ ଅନ୍ଧକାରେ । ଲୋଟି ପଡ଼ୁ ଉର୍ମିସମ ଅଙ୍ଗବାସ ତବ/ମେଘମୁକ୍ତ ଉଷାସମ ହୁଅ ଦିଗମ୍ବରା," କିମ୍ବା ଗଡ଼ନାୟକଙ୍କର 'ସ୍ତନ ଉରସ ଖୋଲି ଦିଅ ପ୍ରିୟା' ପ୍ରଭୃତି କବିତା ଏହାଠାରୁ ବେଶୀ ଦୂରବର୍ତ୍ତୀ ନୁହଁନ୍ତି । ଆପାତତଃ ମାନସିଂହଙ୍କୁ ନୂତନ କବିତା ବିମୁଖ, ଅଯଥା ବିରକ୍ତ ଓ ଏପରିକି ପଶ୍ଚାଦ୍‌ମୁଖୀ ( ରିଗ୍ରେସିଭ ) ବୋଲି ଧରାଗଲେ ବି ଏହି କବିତାରେ—"ଚମ୍ପାଫୁଲ ବେଣୀ ମୂଳେ ଚିହ୍ନଲେଖି ହାତ ଯୋଡ଼ି-କରେ/ତୁମେ ଆସ ତା' ଭିତରୁ ମୋତେ ଯାହା ଅଭଦ୍ର ଅଶ୍ଳୀଳ/ତୁମର

ଓଠରୁ ଛଳେ ଟୋପା ଟୋପା ଝରଇ/କ୍ଷତମ ଆମ୍ଭ ସଙ୍ଗାକୁ କା ପୂର୍ଣ୍ଣ-ଭୂତ ଯେତେ ବ୍ୟଭିଚାର! × + × ଭ୍ରମର ଦାନ୍ତରେ ମୋର ଓଠ ପିବ ଛିନ୍ନ ଭିନ୍ନ ହୋଇ । ଭ୍ରମର ଗୁଣ୍ଠରେ ପିବ ତଳ ହୋଇ କାନ୍ଥ-ଚର ନନ୍ଦନ୍ ନନ୍ଦନ/ଭ୍ରମର ଦେହର ରକ୍ତ ପାଣି ପାଣି ଅଣ୍ଟାଚୋଡ଼ାଇ ପିବ / ଭ୍ରମର ଭିତରେ ମୋର ଆତ୍ମା ପିବ ନିଶ୍ଚିହ୍ନ ମିଳାଇ" ଇତ୍ୟାଦି ଧାଡ଼ିଗୁଡ଼ିକ ପ୍ରକୃତରେ ଦେହଧର୍ମୀ ଆବେଗକୁ ବହନ କରନ୍ତି । ମଣିଷକୁ 'ଭଲ ପାଇବା' ଭିତରେ ଦୈହିକ ମିଳନ ଏକ ପର୍ଯ୍ୟାୟ । ଏହି କବିତାରେ ଏକାନ୍ତବେଳକେ ଦେହଜାତ ସନ୍ନିହିତ ଆଧୁନିକ ଚେତନାର ପରିପକ୍ୱ ସମନ୍ୱୟ ଗୁରୁବାବୁ ଯେପରି କରି ପାରିଛନ୍ତି ସେଭଳି ସମନ୍ୱୟ କରିବାରେ ଏହାଙ୍କ ପରବର୍ତ୍ତୀ କବି ରମାକାନ୍ତ ରଥଙ୍କୁ ଛାଡ଼ିଦେଲେ ଅନ୍ୟ କେହି ସଫଳ ହୋଇଛନ୍ତି ବୋଲି ମନେ ହୁଏ ନାହିଁ । ନିଜ ପ୍ରେମିକା ସହ ସିଧା ସଳଖ ସ୍ଥାୟୀ ମିଳନ ଏହି କବିତାର ସମଗତିଶୀଳ ଚାରି ଚୂଡ଼ାନ୍ତ ବିନ୍ଦୁରେ କବି ଇଚ୍ଛା କରିଛି । ସେ ନିଜେ ମିଳନର ସକଳ ଉପକରଣରୁ ବଞ୍ଚିତ,ବ୍ୟାକୁଳପ୍ରାଣ ଓ ଶଂସ୍ୟାକୁଳ । ସେ ଅଧିକ ଯନ୍ତ୍ରଣା ଓ ନୈରାଶ୍ୟ ନିଜ ମସ୍ତିଷ୍କରେ ବହନ କରିବାକୁ ଶିକ୍ଷିତ ହୋଇଥିଲେ ବି ପ୍ରେମିକାର ଶରୀର-ସଂସ୍ପର୍ଶ ହେବାର ପରିଣତ ପାଇଁ ପିପାସିତ । ସେହି ସମସ୍ତ ଅଳଙ୍କରଣହୀନ ସ୍ପଷ୍ଟୋକ୍ତିକୁ କେବଳ 'ଦେହ ଧର୍ମୀ'ଦୋଷରେ ଦୋଷୀ ଅଭିଯୁକ୍ତ କରିବା ପକ୍ଷପାତିତାପୂର୍ଣ୍ଣ ହେବ ।

ଦେହ ବାଦୀ କବି ମାନଙ୍କଠାରୁ ମୁକ୍ତ ହେଲା ପରେ ମଣିଷକୁ 'ଭଲ ପାଇବା' କୌଣସି ପ୍ରକାର 'ପାପ' ହୁଏ, ତେବେ ତାହା ମଣିଷ ସନ୍ନିହିତ ଗ୍ରଥିତ ଏକ ପ୍ରକାର 'ମୌଳିକ ପାପ' (ଅରିଜିନାଲ୍ ସିନ୍)

ବହୁ ଅତୀତ କାଳରୁ ତ କୁହାଯାଇଛି 'ଶୃଙ୍ଗାର ଚେତ୍ କବିଃ' । ଦେହ ପ୍ରତି ଆସକ୍ତି ଜୀବନଠାରୁ ସଂପୂର୍ଣ୍ଣ ଅବିଚ୍ଛେଦ୍ୟ, ଅବର୍ଜନୀୟ । ପୁଣି ଦେହବାଦୀ କବିତା ଯେ ଆଧୁନିକ କବିତା ହୋଇ ପାରିବନାହିଁ ଏପରି କଥା କୌଣସି ଶାସ୍ତ୍ର କି ବ୍ୟାକରଣରେ ନାହିଁ । କିନ୍ତୁ କିଛିକି ଦେହଧର୍ମୀ କବିତାକୁ ଆଧୁନିକ କବିତାର ବିପୁଳ ଭାବାତ୍ମକ କମ୍ପୋ-ଜିସନ୍ ତୁଳନାରେ ନ୍ୟୁନ ବୋଲି ମନେ କରାଯିବା ସ୍ୱାଭାବିକ୍ । 'ପ୍ରିୟ ବାନ୍ଧବୀ' କବିତାରେ ଦୈହିକ ଆବେଗ ଯେ ନିହିତ ଏହା ସ୍ପଷ୍ଟ । କିନ୍ତୁ ନାରୀ ଓ ଶୃଙ୍ଗାର ଭାବାପନ୍ନ ହୋଇଥିବାର ଇଙ୍ଗିତ, କାମ୍ୟ ବ୍ୟକ୍ତି ଓ ତରଳ ମାନସିକତା, ଏବଂ ମିଳନ ବେଗର ଉଚ୍ଛୃଙ୍ଖଳ ଆବେଗ ଏହାର ଶେଷ କଥା ନୁହେଁ । ଏଥିରେ ଅନ୍ତର ଅନେକ ବୈଷମ୍ୟ ଅଛି, 'ଗ୍ୟାରେଣ୍ଟି ଯୁକ୍ତପ୍ରେମ' ନମିଳିବାହିଁ ସବୁଠାରୁ ମୁସ୍କିଲ୍ ବ୍ୟାପାର । ସେଇ ମନୋବେଦନାହିଁ ଆଧୁନିକ ମଣିଷର ଡିପ୍ରେସିସ୍ ପାଇଁ ଦାୟୀ ।

ଏ କବିତା ସମେତ ଗୁରୁବାବୁଙ୍କ ଅଧିକାଂଶ କବିତାର କାବ୍ୟତତ୍ତ୍ୱ ଏଲିଅଟ୍‌ଙ୍କ କାବ୍ୟତତ୍ତ୍ୱ ଅନୁରୂପ । ଏଲିଅଟ୍‌ଙ୍କର 'ଅବ୍‌ଜେକ୍‌ଟିଭ୍ କରେଲେଟିଭ୍, ଇଉନିଫିକେସନ୍ ଅଫ୍ ସେନ୍‌ସିବିଲିଟି ପ୍ରଭୃତିର ପ୍ରୟୋଗ ଓ ପରୀକ୍ଷା ଗୁରୁବାବୁଙ୍କ କବିତାରେ ସହଜଲଭ୍ୟ । 'ତୁମେଯଦି କିଛିକଥା... ଲୁଚାଇବ ଦ୍ୱେରୀକାରିବାର' ଧାଡ଼ି ଗୁଡ଼ିକ ହିଁ ଇଉନିଫିକେସନ୍ ଅଫ୍ ସେନ୍‌ସିବିଲିଟି'ର ଦୃଷ୍ଟାନ୍ତ । ଏଲିଅଟ୍‌ଙ୍କ ମତରେ ଜଣେ ସାଧାରଣ ପାଠକ ଯାହା ଚିନ୍ତାକରେ ତାହାବିଶୃଙ୍ଖଳ, ରୁକ୍ଷ, ଅସଂଲଗ୍ନ, ଅଡ଼ୁଆ ତଡ଼ୁଆ, ଖଣ୍ଡିତ ଓ ଏପରିକି କମ୍ଭୁତ କିମ୍ଭାକାର ହୋଇପାରେ । ମାତ୍ର ଜଣେ କେହି ଏକାବେଳକେ ତା'ର ନାରୀ ବନ୍ଧୁକୁ ପ୍ରେମକରିପାରେ,

ଷ୍ଟିଫେନୋଜନା ଓ ଚର୍ଚ୍ଚିଲ ପଢ଼ି ପାରେ, ପୁଣି ଜଫିନ୍ଦୋକାନ ର ବାଣ୍ଟା କମ୍ବା ଷ୍ଟାଲଫ୍ ଗ୍ରାଉଣ୍ଡରେ ଗର୍ତ୍ତାନୁଗତିକ ଡେଷ୍ଟଘଷାଣ୍ଢଶୁଣି ପାରେ । ଜଣେ ସାଧାରଣ ବ୍ୟକ୍ତି ପାଇଁ ଏ ପରସ୍ପର ପୃଥକ୍ କାର୍ଯ୍ୟଗୁଡ଼ିକ ଭିତରେ ଆଦୌ କୌଣସି ସଂପର୍କ ନାହିଁ । କିନ୍ତୁ କବି ମନରେ ତାହା ସବୁ ନୂଆ ରୂପକଳ୍ପ ସୃଷ୍ଟି କରି ତାର ରଚନାରେ ସୁସମନ୍ୱିତ ଓ ସୁନିର୍ବାଚିତ ହୋଇ ପ୍ରକାଶ ପାଆନ୍ତି । ଗୁରୁବାବୁ ଏହି ଥିଏଟରକୁ କାର୍ଯ୍ୟରେ ଲଗାଇ ମିଲ୍ ଲୁଗା ପାଲଟାଇଦେଇ, ବନାରସୀ ସିଲ୍କ ପିନ୍ଧା ହଳଦୀ ଲଗାଇ ଦେଇ, ବେଣୀ ମୂଳେ ଚମ୍ପାଫୁଲ ଖୋସିଥିବା ଓ ଗୁଚ୍ଛ ଯୋଡ଼ିକରେ ଶବ ଦେଖିଥିବା, ମାଟି ଉପରୁ ବା ଆକାଶ ଭିତରୁ ପ୍ରିୟ ବାନ୍ଧବୀକୁ ସଂଧାନ କରିଛନ୍ତି । ଏ ସବୁ ଗୋଟିଏ ନାରୀ ବିଷୟରେ କୁହାଯାଉଥିଲେ ବି ଏକାବେଳେକେ ବଧୂ, ପ୍ରେମିକା, ବାରନାରୀ, ସ୍ୱାଧୀନ ଭର୍ତ୍ତୃକା, ଭଞ୍ଜୀୟ କାବ୍ୟନାୟିକା, ବାସକସଜ୍ଜା, ଓ ବୈଷ୍ଣବୀୟ 'ସମର୍ଥା' ପର୍ଯ୍ୟନ୍ତ ଏବଂ ସେଥି ସହିତ ମିଲ୍ ଲୁଗା ପିନ୍ଧିଥିବା ସମସାମୟିକା-ମାନଙ୍କୁ ବି ଏକାଠି ଗ୍ରଥିତ କରିଛି । ଏ ଗ୍ରନ୍ଥନ ପ୍ରଣାଳୀ ଓଡ଼ିଆ ସାହିତ୍ୟରେ ଏହାପୂର୍ବରୁ ଏତେ ସ୍ପଷ୍ଟଭାବେ ପ୍ରକାଶିତ ହୋଇ ନଥିଲା । ସେହିପରି: ମୁଁ ତୁମକୁ ଭଲପାଏ ଚନ୍ଦ୍ରଭାନୁ ଭଲ ପାଇଥିଲା/ସିଂହଳ ଦ୍ୱୀପର ସ୍ୱପ୍ନ ମୁଁ ଯାଇଛି ଜଣିବାକୁ ଯେବେ/ଲବଙ୍ଗ ବନର କଥା କିମ୍ବା ବାଥା କଦମ୍ବକଡ଼ର/ମୋ ଆଖିରେ ଅବାସ୍ତବ ଏସବୁର ପାଲଟିଛି ତେବେ ।' ପୁଣି, 'ଲବଣ୍ୟବାଣ୍ଡାରୁ ତୁମେ ଆସ ଅବା ରସକଲ୍ଲୋଳରୁ/ କୋଣାର୍କ କାନ୍ଥରୁ ଅବା ସିନେମାର ପରଦା ଭିତରୁ / ମୁଁ ତୁମକୁ ଭଲ ପାଏ ଚନ୍ଦ୍ରଭାନୁ ଭଲ ପାଇଥିଲା/ମୋ ପାଖେ ସିଂହଳ ଯାତ୍ରା କିନ୍ତୁ ଅସମ୍ଭବ ହବ ।' ପ୍ରଭୃତି ଅନ୍ୟ କେତେକ ଦୃଷ୍ଟାନ୍ତ ।

ପ୍ରେମିକ ଚନ୍ଦ୍ରଭାନୁ ଠାରୁ ଏଯୁଗର ପ୍ରେମିକ କବିଯେ ଭିନ୍ନ ତାହା

ମେ ନିଜେ ସ୍ପଷ୍ଟ କରି ଦେଇଛନ୍ତି । ଏଠାରେ ପ୍ରେମିକା, ଦେଶ, କାଳ ଓ ପାତ୍ରର ସସୀମତାରେ ଆବଦ୍ଧ ନୁହନ୍ତି । ପ୍ରେମିକଟିର ଚେତନା କେନ୍ଦ୍ରାଭିମୁଖୀ ହୋଇ ମଧ୍ୟ କେନ୍ଦ୍ରାପସାରୀ । ଏହାର ମଧ୍ୟରେ କାନ୍ତ୍ର ବ୍ୟାଜସ୍ତୁତି ମଧ୍ୟ ଲକ୍ଷଣୀୟ । ଠିକ୍ ଏହା ପ୍ରକାର ବକ୍ରୋକ୍ତି ମଧ୍ୟ ରହିଛି । ତାଙ୍କର 'ଗୋବର ଗଣେଶ' କବିତାରେ:'ମୁଁ ନୁହେଁ ଧିରେ ସ୍ଥିରେ / ଗାଲସ୍କୁଲ,ଚୁମ୍ବନ ବା ରମ୍ଫୁର ନାଯ୍ୱ / ବିରକ୍ତି ଅଭିନୟ ମୋ ଠାରେ ।' (ମାନସିଂହଙ୍କ ପ୍ରେମ କବିତା ସଂକଳନ 'ଧୂପ' । 'ଗାଲ'ସ୍କୁଲ' 'ରମ୍ଫୁର' କବି ଗୋଦାବରୀଶଙ୍କ ଦୁଇଟି ନାଟକ), ଏ ପ୍ରକାର ରୋମାଣ୍ଟିକ୍ ସ୍ୱପ୍ନଚାରୀ-ବାନ୍ଧବୀ-ଆଶାପ୍ରାର୍ଥୀ ନାୟକ ହେବା ଏ 'ଲୁଗା-ଚନ-ତ୍ରେଡ଼ ବାରବାର' ଯୁଗରେ ଯେ ଉପହାସ୍ୟ, ଅଥଚ ପ୍ରେମର ନିରଙ୍କୁଶତା-ସ୍ୱପ୍ନରେ ଯେ କାବ୍ୟ-ପୁରୁଷକୁ ମଗ୍ନ କରି ପାରେ ତାହାହିଁ ଏହାର ଉପଜୀବ୍ୟ । ଏଥିରୁ ସବୁଠୁ ପ୍ରେମିକାକୁ ନିବିଡ଼କରି ପାଇବାର ଇଚ୍ଛା ବହୁ ଦିଗରୁ ଅସଂପୂର୍ଣ୍ଣ;କିନ୍ତୁ ଶବ୍ଦାଡମ୍ବରରେ ମଧ୍ୟ ବକ୍ରୋକ୍ତିର ରହିଛି । ଉପରୋକ୍ତ ଭାବଧାରା ସହିତ ସାମଞ୍ଜସ୍ୟ ରକ୍ଷା କରୁଥିବା ଇଂରେଜକବି ଅଡେନ୍ଙ୍କ Spain 1917 ନାମକ ଗୋଟିଏ କବିତା ଦ୍ରଷ୍ଟବ୍ୟ । ସେହି କବିତାରେ ନିଜକୁ କବି ଅଡେନ୍ ଜୀବନ-ବାନ୍ଧବୀର ଏକାବେଳକେ,'Yes man bar companion, easily duped, your vow to be good, humorous story, business voice ଇତ୍ୟାଦି ବୋଲି ବର୍ଣ୍ଣନା କରିଛନ୍ତି । ଏହା ଭିତରେ ପରସ୍ପର ବିରୋଧୀ ବହୁ ଧାରଣା ଓ ପ୍ରତ୍ୟୟର ସମନ୍ୱୟ ଘଟିଛି । ଠିକ୍ ସେମିତି ଗୁରୁବାବୁ ନିଜର ବାନ୍ଧବୀଙ୍କୁ 'ବସ୍ତ୍ର ଦୋକାନ, ରେ ଆଧୁନିକ ପ୍ରେମ ଗଳ୍ପ' 'ଫିଲ୍ମ ଗୀତ' ଇତ୍ୟାଦି ଇତ୍ୟାଦି ବୋଲି ଉଲ୍ଲେଖ କରିଛନ୍ତି । ଏଗୁଡ଼ିକର ତାତ୍ପର୍ଯ୍ୟ କବି ଅଡେନ୍ଙ୍କ ଉକ୍ତିରୁ

ମିଳୁଥିବା ତାତ୍ପର୍ଯ୍ୟ ତୁଳନାରେ କୌଣସି ଗୁଣରେ, ନ୍ୟୂନ ନୁହେଁ । ନିଜର ନାୟିକାକୁ ଲବଣ୍ୟବତୀଠୁ, କୋଣାର୍କ କାନ୍ଥରୁ, ସିନେମାର ପରଦା ଭିତରୁ' ଅନ୍ବେଷଣ ଭିତରେ ପରମ୍ପରା ସମ୍ବୃତ ବର୍ତ୍ତମାନର ଅଭିଜ୍ଞତାର ସମନ୍ୱୟ କରି ନେଇ ଏହା ପରେ ପରେ ବନ୍ଧୋକ୍ତି('ମୋ ହିଡ଼ଳ ଦୀପ ଯାହା କାହିଁ ଅସମ୍ଭବ ହୁଏ') ଦେବା କବିଙ୍କର ବୈଦଗଧ୍ୟ ସମ୍ବୃତ ବ୍ୟଙ୍ଗାତ୍ମକ ଦୃଷ୍ଟିକୋଣର ଆଧୁନିକତା ହିଁ ମୁଦ୍ରିଇ ଅଛି ।

ଗୁରୁବାବୁଙ୍କ କବିତାରେ ପ୍ରକୃତି ବର୍ଣ୍ଣନା ଏହାର କାବ୍ୟ-ପୁରୁଷର ବ୍ୟକ୍ତିତ୍ୱ ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ । କବିଙ୍କ ଚେତନ ଓ ଅବଚେତନ ମନର 'କାଥାର୍ସିସ୍' ଉପଯୋଗୀ ପ୍ରକୃତିକୁ ନେଇଥିରେ ଦିଆ ଯାଇଛି । ସେ ପ୍ରକୃତି ହେଲା : ଉଷର ନିର୍ଜନ ବାଲୁଚର ଯେଉଁଠି କ୍ଳାନ୍ତ ଜହ୍ନ ନଏଁ, ଚନ୍ଦନ ରାତିର ଅସ୍ଥି କ୍ରମେ କ୍ଷୟ ହୋଇ ଆସେ, ନଈ ତଟ। ଶେଷଥର ପାଇଁ କଣ୍ଠ ମିଳାଉଥାଏ, (ହିଡ଼ାପୁରୀ ଜହ୍ନର ଆଲୁଅରେ ଆଉ ଗୋଟିଏ ପାଣ୍ଡୁ ଦେଖାଯିବ ?), ଶୀତଋତୁ ବୁଢ଼ା ହୋଇ ଆସେ, ନିଶବ୍ଦ ବାଲି ଚରରେ ପବନ ଗୁମୁରିଯାଏ, ଦେହ୍ନ ବାଲିରେ ଆଜିକାଲି ଦିବସ୍ତି ସନ୍ଧ୍ୟାରେ କବି ବୁଲି ଯାଆନ୍ତି, ଯେଉଁଠି ଦୀର୍ଘଶ୍ୱାସ ଜମିଆସେ ଓ ରାତି ଗୃପିହୋଇ ଆସେ—ସବୁଛାତି ଦୁହିଁ ହୋଇ ଏକାକାର ହୁଏ । ଦୂରର ଝାଉଁବଣ ଆଉଜିଇ ରାତି ଧୀରେ ଧୀରେ ଗାଢ଼ ହୁଏ । ସେତେବେଳେ କବି ତାଙ୍କ ବାନ୍ଧବୀ ପାଖରେ ଜନ୍ମଜନ୍ମାନ୍ତରର ଦାବୀ ବାଡ଼ି ବସନ୍ତି । କେତେ ଚେତନାର ସୀମା ପାରିହୋଇ ଚନ୍ଦ୍ରାହତ କେଉଁ ଅଗ୍ନାଗ୍ନି ବନସ୍ତଭିତରେ ନିଦରେ ଶୋଇ ପଡ଼ିବା ଅବସ୍ଥାରେ (psycheର ରୂପକଳ୍ପ, ପ୍ରାଚୀନ ଗପ-କାହାଣୀର ରାଜାଝିଅ ରୂପକଳ୍ପ ମଧ୍ୟ) କବି ତାଙ୍କର ବାନ୍ଧବୀକୁ ଆବିଷ୍କାର କରନ୍ତି । କେବେ ଧୂଣି ରାତି କୋହ ହୋଇ ମିଶିଯାଏ

ବିରାଟ ଶୂନ୍ୟରେ । କବି ଆଶା କରନ୍ତି ତାଙ୍କ ବାନ୍ଧବୀ ପରିଚିତ ପୁରୁଣା ରେଲ ଲଣ୍ଠନ୍ ବାଟରେ ପୁଣି ଫେରିବ, ପୁଣି ଦେଖାଦେବ ନିଘୁଟିଆ ବାଲିଚରରେ, କେଉଁ ଅସ୍ତଜହ୍ନ ତଳେ ଅବା କେଉଁ ବିବର୍ଣ୍ଣ ସଂଧ୍ୟାରେ । କବିତାର ଶେଷାଂଶରେ ରୂଢ଼ ବାସ୍ତବତା ଓ ପ୍ରେମର ଅପମୃତ୍ୟୁଚେତନା 'ଆଜିରାତି ଥଣ୍ଡାହୁଏ, ଜାକି ହୋଇ ଆସେ ହିର୍‌ବିଲପ୍ସ'ର ପ୍ରକୃତି ବର୍ଣ୍ଣନା ଭିତରେ ଅଭିବ୍ୟକ୍ତ ।

ବିଜନ ବାଲିଚରର ଉଷର ଅନୁର୍ବରତା, କବି-ଜୀବନର ସାମ୍ପ୍ରତିକ ନିଃସଙ୍ଗତାର, ଅବକ୍ଷୟଚେତନାର ଓ ମୂଲ୍ୟବୋଧର ବିପର୍ଯ୍ୟୟ-ବୋଧର ସର୍ବୋପରି ଆତ୍ମଦହନର ପ୍ରତୀକ । 'ନିଶୂନ', 'ନିଘଞ୍ଚ', 'ନିଶବ୍ଦ' 'ଜନହୀନ' 'ବିଜନ' 'ବିଦୀର୍ଣ୍ଣ' 'ନିର୍ବେଦ ବିରାଟ ଶୂନ୍ୟ' 'ବିବର୍ଣ୍ଣ' ଓ 'ନିଘୁଟିଆ' ଶବ୍ଦର ବାରମ୍ବାର ବ୍ୟବହାର କବିଙ୍କର ମାନସିକ ଏକାକୀତ୍ୱ ଓ ନିର୍ଜ୍ଜନତାକୁ ହିଁ ପ୍ରକାଶ କରୁଛି । ପ୍ରକୃତି ବର୍ଣ୍ଣନା ତେଣୁ ନାଉଜେଗିଟିକ୍ କବିବ୍ୟକ୍ତିତ୍ୱ ସହିତ ଅବିଚ୍ଛିନ୍ନ ଓ ଅନ୍ତରଙ୍ଗ ସାଯୁଜ୍ୟ ଲାଭକରିଛି । ଫ୍ରଏଡ୍‌ଙ୍କ ମତରେ ଏ ଯୁଗରେ ପ୍ରତି ମଣିଷ ନିଜେରିଟିକ୍ ହେବାକୁ ବାଧ୍ୟ । କବି ନିଜେ ଯାହା, ପ୍ରକୃତିକୁ ସେ ସେହିପରି ଦେଖନ୍ତି । ମନୋଜ ଦାସଙ୍କ ଗଳ୍ପ ଗୁଚ୍ଛକରେ ଥିବା ଜହ୍ନ ଓ ରାତିର ବର୍ଣ୍ଣନାପରି ଏକାବେଳକେ କାବ୍ୟ ପୁରୁଷର ଆତ୍ମା-ସ୍ୱରୂପର ପରିପୂରକ ଓ ପ୍ରତୀକ ହୋଇଛି ପ୍ରକୃତି । ଅନ୍ୟ ଭାଷାରେ କହିଲେ କାବ୍ୟ ପୁରୁଷ ଏଠାରେ ପ୍ରକୃତିକୁ ମନୋ-ନୟନ କରିଛି ନିଜ ଜୀବନ-ସଂପର୍କିତ କରିବା ପାଇଁ । ମୃତ୍ୟୁ ଓ କ୍ଷୟିଷ୍ଣୁତା ସଚେତନ କବି ନିଜ ସମୟର ନାୟକ । ନିଜ ପ୍ରେମିକାକୁ ସଂପୂର୍ଣ୍ଣ ଏକନିଷ୍ଠ ଓ ତୃପ୍ତ ହୋଇ ପାଇବା ପାଇଁ ତାଙ୍କର ଏକ ପ୍ରକାର ଆବେଶନ (ଅବସେସନ୍) ଅଛି । 'ତୁମରି ହାତରେ ମୋର

ଓଠ ଗିବ ଛିନ୍ନଭିନ୍ନ ହୋଇ' ଯେଉଁଭଳି ତୀବ୍ର ଇନ୍ଦ୍ରିୟପରାୟଣତା (ସେନ୍‌ସୁଆଲିଟି) ମୂର୍ତ୍ତ ଏ, ଠିକ୍ ସେହିଭଳି ଏକ 'ଆତ୍ମ-ପିଡ଼ନ ରତି' (ମାସକିଜିମ୍)କୁ ମଧ୍ୟ ସୃଷ୍ଟି କରିଥାଏ । ସମଗ୍ର କବିତାରେ କବିର ବ୍ୟକ୍ତିତ୍ୱ ଖୁବ୍ ବେଶୀ ସୌନ୍ଦର୍ଯ୍ୟବ୍ୟଂଜକ ନୁହେଁ, ବରଂ ବାନ୍ଧବୀର ସାନ୍ନିଧ୍ୟାଭିଳାଷୀ । କବିର ଅବଚେତନରେ ନିହିତ ଯୌନ କ୍ଷୁଧା ଓ ବିଳମ୍ବ-ପ୍ରବୃତ୍ତି (ଡେଥ୍ ଇନ୍‌ଷ୍ଟିଂକ୍ଟ୍) ଯେତେବେଳେ କୌଣସି ବାହ୍ୟ ଧ୍ୱଂସାତ୍ମକ କ୍ରିୟାରେ ପ୍ରକାଶିତ ନ ହୋଇ ବ୍ୟକ୍ତିଠାରେ ସଞ୍ଚିତ ହୋଇ ରହିଯାଇଥାଏ ତାହାହିଁ କାମ-ସ୍ଥାନ (erogenous) ଜନିତ ଆତ୍ମ-ପୀଡ଼ନ-ରତି-ମନୋବୃତ୍ତି ବ୍ୟକ୍ତିଠାରେ ସୃଷ୍ଟି କରିଥାଏ (ଫ୍ରଏଡ୍) । ପ୍ରେମିକ-ବ୍ୟକ୍ତିତ୍ୱର ଏ ସକଳ ଚେତନା ଓ ଅଭିଜ୍ଞତାରେ 'ପ୍ରିୟବାନ୍ଧବୀ' କବିତା ଗମ୍ଭୀର ।

ଏହି କବିତାର ଆଙ୍ଗିକ ବା ଗଠନ ସୌଷ୍ଠବ ହେଉଛି ତାଙ୍କର 'କାଳପୁରୁଷ' ଓ ଅନ୍ୟାନ୍ୟ ସମସ୍ତ କବିତାର ଆଙ୍ଗିକ (ଫର୍ମ) । ଏ ଦୃଷ୍ଟିରୁ ଇଲିଅଟ୍‌ଙ୍କୁ ହଜମ କରିବାରେ ସେ ପଥିକୃତ୍ । ଆଧୁନିକ କବି ଏପରି ଏକ ଆଙ୍ଗିକ ବ୍ୟବହାର କରେ ଯାହା ତା'ର ନିଜଭାଷାରେ ଗଚ୍ଛିତ ଦବୁ ପ୍ରକାର ଛନ୍ଦଉପାଦାନ ନିୟନ୍ତ୍ରଣ କରିପାରେ, ଅଥଚ ଆଙ୍ଗିକର ବ୍ୟବହାରରେ ସେ ନିଜର କଥିତଭାଷା, ଉପଭାଷା (ଡାଏଲେକ୍ଟ) ପ୍ରଭୃତିର ସ୍ୱାଧୀନତା ଅକ୍ଷୁର୍ଣ୍ଣ ରଖିପାରେ । ଏକଦା ସବୁଜ କବିତାର ଓ ତତ୍ ପରବର୍ତ୍ତୀ ମାନସିଂହ, ରାଧାନାଥଙ୍କ ଓ ସଚି ରାଉତରାୟଙ୍କର ପୁରୁଣା ଆଙ୍ଗିକର ମନୋଟୋନି ଓ ମନ୍ଥରତାକୁ ପରିତ୍ୟକ୍ତ କରି, ପୁରୁଣା ଓ ନୂଆ—ଉଭୟ ପ୍ରକାର ରୂପକଳ୍ପର ସୁସଂଯତ ପ୍ରୟୋଗ କରିବାରେ ସେ ସଫଳ । ଏହା ସହିତ କବିତାରେ ଗତିଶୀଳତା ଅକ୍ଷୁର୍ଣ୍ଣରଖି ବସ୍ତୁତଃ ନିଜର ଭାବ ଅନୁଯାୟୀ ଉପମା, ଉପମେୟ, ପ୍ରତୀକ ଓ ଖଣ୍ଡବାକ୍ୟ ଗୁଡ଼ିକର ଅନୁପାତିକ ସ୍ୱରସାମ୍ୟ ସୁରକ୍ଷା କରିବାରେ 'ପ୍ରିୟବାନ୍ଧବୀ' ସମେତ ସମସ୍ତ କବିତାରେ ସେ ସିଦ୍ଧହସ୍ତ ।

ପଚାଶ ଓ ଷାଠିଏ ଦଶକ ରେ ଗୁରୁବାବୁଙ୍କ ରଚନାମାନ ପ୍ରକାଶ ପାଇବା ଆରମ୍ଭ କରେ । ବିଶେଷକରି 'ନୂତନ କବିତା'ର ପ୍ରକାଶ ପରେ ପରେ ସମସାମୟିକ ବହୁ ବୟସ୍କ କନିଷ୍ଠ କବି ତାଙ୍କୁ ଆଙ୍ଗିକ-ପ୍ରୟୋଗରେ ଅନୁସରଣ କରିଛନ୍ତି । ପ୍ରବନ୍ଧର

କଳେବରବୃଦ୍ଧି ଆଶଙ୍କାରେ ଏଠାରେ ସଂକ୍ଷେପରେ ପ୍ରବଗଜ ସତ୍ୟନାରାୟଣ ନନ୍ଦଙ୍କ ଦୃଷ୍ଟାନ୍ତ ସ୍ୱରୂପରେ ଉଲ୍ଲେଖ କରାଯାଉଛି ।

ସଂକୀର୍ଣ୍ଣ ଗୋହିରୀ ବାଟ ଅବା ଶୂନ୍ୟ ଝରଣା ମଝିରେ
ଆମେ ଦୁହେଁ ଏକା ଏକା ହାତରଖି ନିବିଡ଼ ମୁଠାରେ
ପରସ୍ପରେ ଅନାଇଲୁ ପରସ୍ପରେ ଅବା ଦେଖିଥିଲୁ
ସିଂହଳ ନାଟୋର ପୁଣି ଭେନିସେନାର ଫଳ ବଗିଚାରେ । ୧୬୦
କିଛି ବାଟ ଯିବା ପରେ କୁହୁଡ଼ି କହିଲା
ଆଉ ଚାଲି ହେବ ନାହିଁ ନାଲି ଗୋଡ଼ ଶରୀର ଗୁଳାରେ
ଏଇଠି ବସିବା ଚାଲ ଆକାଶର ନୀଳ ଛାଇ ତଳେ
ଦେଖିବା ରାତ୍ରିର ଦୃଶ୍ୟ ବସି ବସି ଏ କାଠ ପୋଲରେ ।

('ଶବସଙ୍ଗମ'- ମହାନଦୀ ପବ୍ଲିକେଶନସ୍, କଟକ ୧୯୭୯)

'ପ୍ରିୟବାନ୍ଧବୀ'କବିତାର ମୁଖ୍ୟଭାବ ହେଉଛି ପ୍ରେମିକମଣିଷ ପାଇଁ ପ୍ରିୟ ମଣିଷର ଏକ ଚିରନ୍ତନ ଅଭାବବୋଧ, ବ୍ୟର୍ଥତାବୋଧ ଓ ତଜ୍ଜନିତ ଆତ୍ମ-ଦହନ । ନିଜର ପ୍ରେମନିବେଦନରେ କାବ୍ୟ-ପୁରୁଷର ସକଳ ବିଶ୍ୱସ୍ତତା ଓ ଆନ୍ତରିକତା ସତ୍ତ୍ୱେ ପ୍ରେମିକା ଚିରଦିନ ଅନୁପସ୍ଥିତା ଓ 'ଭକ୍ତିହୀନ' । ଏକଦା ତା'ସହିତ ଘଟିଥିବା ଘନ-ସମ୍ପର୍କ ଅଭିଜ୍ଞତା ଅନୁଭବର ସମସ୍ତ ଦ୍ୱାରରେ ଭ୍ରଷ୍ଟ, ଖଣ୍ଡିତ ଓ ଛିନ୍ନବିଚ୍ଛିନ୍ନ ତାହାହିଁ ସଚେତନ କାବ୍ୟ-ପୁରୁଷର ମାନସିକ ସଙ୍କଟ । ସମଗ୍ର ଦ୍ୱାରା ସତ୍ପ୍ରେମ ଓ ପ୍ରେମିକା ଅପହୃତ । କେବଳ 'ପ୍ରିୟବାନ୍ଧବୀ' କବିତାନୁହେଁ । କାରଣ କେଶ, ଶାଢ଼ୀ, ସୌନ୍ଦର୍ଯ୍ୟ ଓ ବୟସଥିବା ପ୍ରେମିକାଆକୃତର 'ନାୟିକା' କେବଳ ମଣିଷରପ୍ରିୟବାନ୍ଧବୀ ହୋଇପାରନ୍ତିନାହିଁ—ଭଲ ସମସ୍ତ-ନିରପେକ୍ଷ କବିତାମଧ୍ୟ ରସଗ୍ରାହୀ ବୁଦ୍ଧିଜୀବୀଙ୍କର ପଠନ ଲିପ୍ସାର ପ୍ରିୟବାନ୍ଧବୀ ହୋଇପାରେ ।

●

ପ୍ରମୋଦ କୁମାର ମହାନ୍ତି

# ସିଉଳିଆ

—ଏକ—

ଧାନଚିଡ଼ି ନଈ ସିନା ଏଠି ନାହିଁ, ଏଠ ଶୀର୍ଣ୍ଣ ସିଉଳିଆ ନଈରେ
ରାତି ଭୋର ଅନ୍ଧାରରେ ତାରା ଝରେ ବିବର୍ଣ୍ଣ ଶ୍ରୀହୀନ
ଏଠି ବାଲି ଅପନ୍ତରା ଡେଇଁ ଘାସ ଲୁଚୁଚିଆ ବଣ
ରାତିରେ ପବନ ଆସେ ଖୋଜି ଖୋଜି ଝରକାରେ ଅଖିପତା
ଡିବାର ଅଲୁଅ ।

ଏଠି ମୁଗ କୋଳଥର କିଆରିରେ ଜହ୍ନ ଆସେ ନଚ୍ଚୁଟିଆ ଅଟଡ଼ା ଉପରେ
ଏଠିବି ଅନ୍ଧାର ଆସେ ଘାରି ହୋଇ କୁହୁଡ଼ିରେ
ଏଠିବି ବାଦୁଡ଼ି ଡେଣା କାକରି ଝଡ଼ାଇ ଯାଏ ତୋଟାରେ ନିଶୂନ
ଶାନ୍ତ ଚୁପ୍ ଚୁପ ହେଲେ
ଏଠିବି ଏ ମାଟି କେତେ ଭଲ ପାଏ ମଣିଷକୁ ଅଗଣିତ କାମନାର
କେତେ ଆଶା ନିରାଶା ଭିତରେ ।

ମୋ ଦେହର କାମ୍ୟ କେତେ ପ୍ରେମ ମୋର ଏ ମନର ମୋ
ଆତ୍ମାର କେତେ ଯେ ପିପାସା
ଏହି ଘାସ କାକର ଓ ଏହି ଧାନ ମହକରେ, ଡାହୁକର
ଏ ଡାକରେ ହୁଏତ ବା ରହିଛି ନିହିତ
ତେଣୁ ଯେବେ ସନ୍ଧ୍ୟା ବେଳେ ଆଲୁଅ ନରମ ହୁଏ ଗ୍ରାମ
ଜଟମ ଶୁଖିଲା ଛଣରେ
ମୋର କ୍ଳାନ୍ତ ହତା ଘେଣ ସମସ୍ତ ହଠାତ ଆସେ ଅଜ୍ଞାତ
ଏ ଅନ୍ଧାରର ପ୍ରଶ୍ନ ଆଉ ବହୁତ ସନ୍ଦେହ ।

## —ଦୁଇ—

ଧାନସିଡ଼ି ନଈ ଯିବା ଏଠି ଜହ୍ନି ଏହି ସିଠଆଳ ଧାର
ଭାଗ କେତେ ଖଟପ ଆଉ ମେଦ ଖଟପ ମୋ ଆଖିର ଦିଗ୍‌ବଳୟ ଘେଣ
ମୋର କ୍ଷୁଦ୍ର ଚେତନାର ଫାଗଣ ଯେପାଖେ ଏହି
ପୃଥିବୀର ଋତୁଚକ୍ର ଠଣ
ଧାନର ମହକ ଯେବେ ଫେଣବ ବା କୁହୁଡରେ ଠକ୍ ଆଜ୍ଞା ପଣ—

ସେଦନ ଯଦ ମୁଁ ଫେରେ ହୁଁ ଏହୁଁ ଆମ୍ବଗଛ ବଙ୍ଗଳାର କଷ୍ଟି ଆଉ କଡ଼ !
ସେଦନ ମୁଁ ଫେଣବାର ସାର୍ଥକତା କେଉଁଠି ବା,
ନଗ୍ନଟିଆ ଏ ନଈତୁଠରେ
ନଗ୍ନଟିଆ ବାଲୁଚର ବେଣା ଘାସ ଝେନ୍ଦରେ ବା ନିରର୍ଥକ
ମୋର ଏହି ଆତ୍ମାର ଅତୀତ
ସେଦନ ମୁଁ ଯଦ ଫେରେ - ସାର୍ଥକତା କେଉଁଠି ବା
ଶାନ୍ତ କାହିଁ ମୋର ଏହି ଭଲ ପାଇବାରେ ?

ମୋର ଭଲ ପାଇବାରେ ଏ ବାଟର ବିଷଣ୍ଣତା ଆଉ ଏହି ପାଦଚିହ୍ନ ସବୁ
ଖାଲି ପାଦ ଚିହ୍ନ କେତେ ଯୋତା ଓ ଖଡ଼ମ୍ ଦାଗ
ସାଇକେଲ ଚକ ଦାଗ କେତେ
ଗ୍ରେଟ, ଢ଼ଞ୍ଚ, ଗୋଲ ଗାଲ୍ ମୋଟ ସୋଟ ଯେତେ ସବୁ
ଏ ବାଟରେ ଗଲେ ଖିଣ୍ଟ ନଈ ମୋଡ଼ କାନ୍‌ଭାସ୍ ଯୋତା ଦାଗ ରଖି
ଟାଟା ଆଉ କଲିକତା ଗଡ଼ଜାତ ଗ୍ରିକିସି—ତା ପରେ......
ସ୍ମୃତିରକାରୁଣ୍ୟ ଭରି ଏ ବାଟର ବ୍ୟର୍ଥତା ଓ ନିରର୍ଥକ ନିଶବ୍ଦ ବେଦନା !

ଆଜି ଯେବେ ଶୁଇ ଜମେ ସେ ପାଣର ଅତଡ଼ାରେ - ଏପାଣର
ଧାନଗଛ କଇଁ ପାଟୁଡ଼ାରେ

ଅଲୁଅ ନରମ ହୁଏ ହଳଦୀ ପାଣିରେ ଗୋଳି ଚସର
କଂଟା ଓ. ଘାସ ଶୁଖିଲ ଡେଣା
ଏହି ଗ୍ରାମ ଅନ୍ଧାରରୁ ସମସ୍ତର ସେପାଖରୁ ସେମାନେ
ଆସିବେ କଣ ଫେରି ଏହି ଧାନ ମହକରେ
ପରିତ୍ୟକ୍ତ ଯେତେ ଆଶା କାମନାର ପଛେ ପଛେ
ଏହି ଭଲ ପାଇବା ଓ ଏ ଗାଁର ନିଶବ୍ଦ ଦେହକୁ ?

ନିଶବ୍ଦ ଏ ବେଦନାର ସ୍ମୃତି ମିଛ ଏ ଅଚ୍ଛନ୍ନତା... ସମସ୍ତର ସ୍ଥଗିତ ମୁହୂର୍ତ୍ତ
ଅତୀତର ମୁହଁ ସବୁ ସେମାନେ ଏ ଦିଗନ୍ତର ସୀମାର ସେପାଖେ
ଆଜି କଣ ଛିଡ଼ାହୋଇ ଏ ପାଖର ଏହି ବାଲି,
ସିନ୍ଧୁଆର ଶୀର୍ଣ୍ଣ ଏହି ଦେହର ସୀମାରେ
ସେମାନେ ଶୁଣନ୍ତି କଣ ଜୀବନର ପ୍ରତିଧ୍ୱନି ?
ଏଠି ଯେତେ ହାରଜିତ କଟକଣା ଓ ଟାଉଟର, ହସ ଲୁହ ଈର୍ଷା ଭୟ
ଏହି ଭଲ ପାଇବାର ନମିକ ଏ ଛନ୍ଦ ଆଉ
ମୃତ୍ୟୁର ଏ ନିଶବ୍ଦ ସଂସାର ?

ଗଡ଼ଜାତ କଳକଟା ଟାଟା ଆଉ ସରକାରୀ ପ୍ରକଳ୍ପ··· ତାପରେ...
ଜୀବନର କ୍ଲାନ୍ତ ବାଟ ମାଇଲ ମାଇଲ କେତେ ଚଢ଼ାଣି ଓହ୍ଲାଣି
କୋଣ କୋଣ କେତେ ସ୍ୱପ୍ନ କେତେ ଦ୍ୱେଷ ଅହଙ୍କାର
କେତେ ଭଗ୍ନ ଆଶା ଓ ବ୍ୟର୍ଥତା

ପାଣହୋଇ ସନ୍ଧ୍ୟାବେଳେ ସେମାନେ ଫେରିଲେ ଦିନ
ମଶାଣିର ଏହି ନାଲି ପଲାଶ ଫୁଲରେ
ସେମାନେ ହଠାତ୍ କଣ ଦେଖି ନାଲି ପ୍ରଜାପତି ଅକସ୍ମାତ
ଛିଡ଼ାହୋଇ କେତୋଟି ମୁହୂର୍ତ୍ତ
ଭାବିଥିଲେ ଫେରିବାକୁ ଏହି ଧାନ ମହକରେ ହଳଦୀ ବସନ୍ତ
ଆଉ ସିନ୍ଧୁଆର କୁହୁଡ଼ି ସହିତ ?

ଏହି ଭଲ ପାଇବାର ନିଃସଙ୍ଗ ବେଦନା ନଁ ଏ ପଉଷର ଧୂସର ଦେହରେ
ଆଜି ଆମ୍ବ ବଉଳରେ ପବନ ସଦବା ଛୁଏଁ ଦୂର ନଈ ଅଡଡ଼ା ଉପରେ
ଝଂଟିକା ସଦବା ଡାକେ ଆଉ ଅଚହ୍ନା ପକ୍ଷୀର
ନିଃସଙ୍ଗ ଡାକରେ ମିଶେ ପାଟି ଶୋକ ନ୍ୟାସ୍ତ ନିଃଶ୍ୱାସର
ଆଜି ଯେବେ ପଉଷର ନିସ୍ତବ୍ଧ ଦେହରେ ଯାଏ କ୍ଷସ୍ତ ହୋଇ
ଏ ଗାଆଁର ଦେହ

ମୁଁ ଫେର ପଛକୁ ଚ୍ଛିନ୍ନେ
କେତେ ଝଡ଼ କାକର ଭିତରେ
କ୍ଷମ୍ଣ ହୋଇ ଯାଇଥିବା କେତେଭଲ ପାଇବାର ହିସାବ
ନିକାଶ କେତେ ସଞ୍ଜ କେତେ ନିଶବ୍ଦ ସମସ୍ତ ।

—ତିନି—

ଧାନସିଡ଼ି ନଈ ସିନା ଏଠି ନାହିଁ ଏଠି ସିଡ଼ୁଆର ସୁଅ
ଏଠି ଭୋର ପବନରେ ଝଡ଼ିଯାଏ ଜୀର୍ଣ୍ଣପତ୍ର କେତେ
ଧାନସିଡ଼ି ନଈ ପ୍ରାନ୍ତେ କେଉଁ ଗ୍ରାଇ ଗଛ ଆଢୁଆଳେ
ବିଦେଶୀ କବିର ଆତ୍ମା ଆଜ ପୁଣି ଫେରୁଥିବ ହୁଏତ
ଏ ଧାନ ମନ୍ଦକରେ
ପରିତ୍ୟକ୍ତ କାମନାର ଦେହ ଖୋଜ...ଏହି ଭଲ ପାଇବାର ଦେହ ।

ଏହି ଭଲ ପାଇବାର ଦେହ ଧରି ଏ ପୃଥିବୀ ହୁଏତ ବା
ଏତେ ରୂପବତୀ
ହଳଦୀ ଓ ଅଳତାର ଦାଗ ଗୋଳି ଆକାଶରେ ଫାଲ୍‌ଗୁନର
ଦିନ ଯେବେ ଫେରେ
ପଉଷର କୁହୁଡ଼ିରେ ଘୋଡ଼ି ହୋଇ ଅମ୍ବତୋଟା ଚୂପ୍‌ଚାପ
ନିଛାଟିଆ ଜାମୁକୋଳି ବଣ

ଉପରର ଝରାପୂଣି ଜାଳିଦିଏ କୋଷ୍ଟମାସ ବଳ, ବାଉଁଶ, କଣ୍ଟକିଆ ଚଗ
ସେତେବେଳେ ମଣିଷର ରକ୍ତରେ ଜୀବନ୍ତ ହୁଏ ହଠାତ୍ ଅଜ୍ଞାତ ତାର
ପଞ୍ଚଭୂତ କାମନାର ମୃତ ମୃଗ ସ୍ମୃତି କେତେ ଏଗାଆର
ପୁଞ୍ଜ ପୁଞ୍ଜ

ମୁଁ ତେଣୁ ପନ୍ଥକୁ ଯେବେ ଫେରି ଗୃହେଁ ମୋ ସତ୍ତାର
ବ୍ୟଥା ଓ କ୍ଳାନ୍ତିରେ
ମୋର ସବୁ କାମନାର ନୀରବର ପ୍ରେତାତ୍ମା ଯେବେ ପାଲଟେ
ଏ ଧୂସର ପଲସ
ହୁଏତ ଏ ପୃଥିବୀକୁ ଭଲପାଏ ଦେହ ମୋର ସ୍ମୃତିର
ଏ ବେଦନା ଭିତରେ
ତଥାପି ମୋ ଗୃହପାଖେ ସମସ୍ତର ହାହାକାର ମୃତ୍ୟୁର
ଏ ଚରମ ଶୂନ୍ୟତା
ଶୂନ୍ୟ ଏହି ବେଦନାର ବିଷର୍ଣ୍ଣ ଏ ଗୋଧୂଳିରେ, ଏ ପୃଥିବୀ
ଏ ମ୍ଳାନ ଆକାଶ
ଏହି ବେଦନା ବିଷର୍ଣ୍ଣ ଏ ଗୋଧୂଳି, ଏ ପୃଥିବୀ ଏମ୍ଳାନ ଆକାଶ
ଆଉ ମୋର ସାମ୍ନାରେ ଏହି ବାଉଁଶ ଉପାଙ୍ଗର ଏହି ଧଳା
କ୍ଷୀରକୋଳି ଫୁଲ
ସ୍ମୃତିର ବେଦନା ଅବା ଅଜ୍ଞାତର ଅମ୍ଳାରେ ବା ସ୍ୱପ୍ନ
ଆଉ ଆସନ୍ନ ମୃତ୍ୟୁରେ
ପାଏ ପୁଣି ଅର୍ଥନ୍ୟାସ ଆକାଶ ଓ ଏ ପୃଥିବୀ
ଏହି ମୋର ଦେହ ତଳେ ଏହି ଝଡ଼ାପତ୍ର ଆଉ
ଏହିବାଉଁଶ ଉପାଙ୍ଗର କଣ୍ଟା ଆଉ କ୍ଷୀର କୋଳିଫୁଲ ।

ଗୁରୁ ପ୍ରସାଦଙ୍କ 'ସିଡ଼ୁଆ' ଏକ ସ୍ମୃତିର ଲିରିକ୍। କବିଙ୍କ ଆଗରେ ଏହା ଦୁଇଟି ପୃଥିବୀ ଉନ୍ମୋଚନ କରେ । ଗୋଟିଏ ବାସ୍ତବର, ଅନ୍ୟଟି ସ୍ୱପ୍ନର । ଏ ସ୍ୱପ୍ନର ପୃଥିବୀର ପୁଣି ଦୁଇଟି ଦିଗ । ଗୋଟିଏ ସ୍ମୃତିର, ଅନ୍ୟଟି ଭବିଷ୍ୟତ କାମନାର । ଏ ସବୁ ଚେତନା ମଧ୍ୟରେ ଆଉ ଗୋଟିଏ ଚେତନା ଛନ୍ଦାଛନ୍ଦ । ସେ ଚେତନାଟି ହେଉଛି ସମଗ୍ର ଚେତନା । ତେଣୁ 'ସିଡ଼ୁଆ' ଏକ କାଳ, ଏକ ସ୍ମୃତିର ପ୍ରକାଶ ।ବର୍ତ୍ତମାନର ଗୋଟିଏ ମୁହୂର୍ତ୍ତରେ ଅତୀତ ଅଉ ଭବିଷ୍ୟତ ଜରିଆରେ ଏ ଜୀବନର ଏକ ଆବେଗମୟୀ ପ୍ରକାଶ । ତେଣୁ ଏ କବିତାଟିରେ ଗୁରୁପ୍ରସାଦଙ୍କ ଚେତନା ପୂର୍ଣ୍ଣ ବିକାଶ ଲାଭ କରିଛି । ଏ ପ୍ରବନ୍ଧର ଉଦ୍ଦେଶ୍ୟ ଏହି କବିତାକୁ ବିଶ୍ଳେଷଣ କରି ଏହି ଚେତନାକୁ ଅନୁଭବ କରିବା ।

୨

କବିତାର ଆରମ୍ଭ ହୁଏ 'ଧାନସିଡ଼ି' ନଈର ବର୍ଣ୍ଣନାରୁ । ଧାନସିଡ଼ି ନଈର ଉଲ୍ଲେଖ ସଚି ରାଉତରାୟଙ୍କୁ ମନେ ପକାଏ । ତାଙ୍କ କବିତାରୁ ଏ ନଈ ସ୍ୱପ୍ନ, ଗ୍ରାମ୍ୟ ଶୋଭାର ଏକ ସ୍ୱପ୍ନିଲ ପରିବେଶ ସୃଷ୍ଟି କରେ । ଏହା ଯେମିତି ଏକ କୁଟିର 'ପୃଥିବୀ । ପ୍ରକୃତିର ଶୋଭାରେ ଭରପୂର । ସୁଖ ଆନନ୍ଦର ଶିଖରେ ଝଲମଲ । ମାତ୍ର 'ସିଡ଼ୁଆ' ଏମିତି ନଈଟିଏ ନୁହେଁ । ଏହା କବିଙ୍କ ଗାଁର ଅତି ସାଧାରଣ ଶୀର୍ଣ୍ଣ ଧାରଟିଏ । ଏହାର ପାଣିରେ ସ୍ୱପ୍ନର ଇନ୍ଦ୍ରଧନୁ ଫୁଟେ ନାହିଁ । ସଚି ରାଉତ୍ରାୟଙ୍କ ନଈ ସହ ତୁଳନାର ସୂଚନା ଦ୍ୱାରା କବିଙ୍କର ବାସ୍ତବ ଚେତନା ସ୍ପଷ୍ଟ । ଅର୍ଥାତ ଏକ ବାସ୍ତବ ଦୃଷ୍ଟିକୋଣ ନେଇ ସେ 'ସିଡ଼ୁଆ'କୁ ଦେଖିଛନ୍ତି । ତାଙ୍କ ମନର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ଏ ନଈର ପାଣି 'ବିବର୍ଣ୍ଣ', 'ଶ୍ରୀହୀନ' । ଏହାର 'ଗୁଗୁଚିଆ ବଣ' ପାର ହୋଇ ପବନ ଆସେ 'ଶୌକି ଶୌକି 'ଆଖିପତା ଉପରେ ଆଲୁଅ' । ଏଠାରେ ସାଧାରଣ ଜୀବନ, ସାଧାରଣ ପ୍ରକୃତି, ମୁଗ, କୋଳଥ କଅଁଶ । 'ନଗ୍ରଟିଆ ପଡ଼ିଆ' ଉପରେ ଜହ୍ନ ଉଠିବା ପୂର୍ଣ୍ଣିମା ବାଟୁଡ, କୁହୁଡି କାକର ସବୁ ବାସ୍ତବ ପରିବେଶ ସୃଷ୍ଟି କରନ୍ତି । ଏହାରି ଭିତରେ ମଣିଷର 'ଆଶା ଅଉ ନିରାଶା'

ଏ ସବୁ ଭିତରେ ମାଟି ଓ ମଣିଷର ସଂପର୍କ । ଅଦମ, ନିବିଡ଼ । ଆଉ ଏ ସମ୍ପର୍କର ପ୍ରତୀକ ଏ ସିଢ଼ୁଆ ନଈ ।

ଏଇ ପରିବେଶ, ଏଇ ସମ୍ପର୍କ ସହ ଏକ ହୋଇଛି କବିଙ୍କର 'କାମ୍ୟ ଆଉ ପ୍ରେୟ' । ଏହାରି ଭିତରେ ଏକ ହୋଇଛି "ମୋ ଆତ୍ମାର କେତେ ଯେ ପିପାସା" । ଏଇ ଗ୍ରାମ୍ୟ ପରିବେଶ ଭିତରେ କବିଙ୍କ ସତ୍ତା ଏକ ହୋଇଛି । 'ଘାସ, କାକର ଓ ଧାନର ମହକ ଭିତରେ । ଏହି ସମ୍ପର୍କରେ ହିଁ କବି ଚେତନା ଉଙ୍କି ମାରେ । ଏ ଚେତନା ହେଉଛି ସମୟ ଚେତନା । ଏ ଚେତନା ପରିବର୍ତ୍ତନର ଚେତନା । ବୟସ ବଢ଼ି-ଯିବାର ଚେତନା । ଏହି ଚେତନା ତାଙ୍କ ସତ୍ତାକୁ 'କ୍ଲାନ୍ତ' କରେ । ମନରେ ଅନେକ ପ୍ରଶ୍ନ ଜଗାଏ ; ଅନେକ 'ସନ୍ଦେହ, ଘୃଣା । ଏହା ହିଁ କବିତାର ପ୍ରଥମ ସ୍ତରର ଚେତନା । ତେଣୁ 'ସିଢ଼ୁଆ' ଏକ ସାଧାରଣ ନଈ ହେଲେ ହେଁ କବିଙ୍କ ପାଖରେ ଏହା ଏକ ଅସ୍ତିତ୍ୱ । ଯା'ର ସ୍ମୃତି କବିଙ୍କୁ ନିଜ 'ସତ୍ତା', 'ଆତ୍ମା' ବିଷୟରେ ସଚେତନ କରାଏ । ସିଢ଼ୁଆ ଏଇ କାଳ, ଚେତନାର ପ୍ରତୀକ, ଏଇ ସ୍ମୃତିର ପ୍ରତୀକ ।

ସମୟ ସ୍ରୋତରେ କବି ଏ ସିଢ଼ୁଆ ପାଖରୁ ବିଚ୍ଛିନ୍ନ । ଆଉ ଯୁଗୁ ତଳ ପରେ ଯଦି ପୁଣି ସେ ଏ ନଈର କୋଳକୁ କେବେ ଫେରନ୍ତି । ଏ ଫେରିବାର 'ସାର୍ଥକତା' କେଉଁଠିବା ରହିବ । କାରଣ ସେ କ'ଣ କେବେ ସେଇ ପୁରୁଣା ଲୋକ ହୋଇ ସେ ପୁରୁଣା ପୃଥିବୀକୁ ଫେରି ପାରିବେ ? ତାଙ୍କ 'ଆତ୍ମାର ଅତୀତ' କୁ ଫେରି ପାଇବେନି । ତାଙ୍କ ପରିଚିତ ପୃଥିବୀ ବଦଳି ଯାଇଥିବ । ତାଙ୍କ ଆଗରେ ଖାଲି ପଡି ରହିଥିବ ଅସଂଖ୍ୟ ପାଦଚିହ୍ନ, ସାଇକ୍ଲ ଚକ ଦାଗ । ଏ ବର୍ଣ୍ଣନା ଅତ୍ୟନ୍ତ ମର୍ମସ୍ପର୍ଶୀ । ଏହା ଏକାଧାରରେ ସମୟର ପରିବର୍ତ୍ତନ ସୂଚାଉ ଥିବାବେଳେ ଅନ୍ୟ ଦିଗରେ ଗ୍ରାମ୍ୟ ଜୀବନର ଏକ ମର୍ମସ୍ପର୍ଶୀ ବର୍ଣ୍ଣନା ମିଳେ । ଆମ ଗାଁ ଭିତରକୁ ପଶିଆସେ ଟାଟା, କଲିକତା ଓ ଗଡ଼ଜାତର ଟ୍ରକସ୍ । 'ସିଢ଼ୁଆ' କୋଳରେ, ତାର

ଅପରିବର୍ତ୍ତିତ ଭାବରେ ବିରାଟ ନାଟକ ଘଟିଯାଏ । ଆଉ କବିଙ୍କ ପାଇଁ ଖାଲି ରହିଯାଇଛି "ସ୍ମୃତିର କାରୁଣ୍ୟ ଭରା ଏ ବାଟର ବ୍ୟର୍ଥତା ଓ ନିରର୍ଥକ ନିଶବ୍ଦ ବେଦନା ।" କବିଙ୍କ ମନରେ ପ୍ରଶ୍ନ ଉଠିଛି—

"ଏହି ଛାଇ ଅନ୍ଧାରରୁ ସମୁଦ୍ରର ସେ ପାଖରୁ ଯେମାନେ ଆସିବେ
କଣ ଫେରି ଏହି ଧାନ ମସ୍ତକରେ
ପରିତ୍ୟକ୍ତ ଯେତେ ଆଶା କାମନାରୁ ପଚିବ ପଛି
ଏହି ଭଲ ପାଇବା ଓ ଏ ଗାଁଆଁର ନିଶବ୍ଦ ଦେହକୁ ?"

ଏହି ପ୍ରଶ୍ନର ଉତ୍ତର ନିଶ୍ଚିତ ମିଳିବ ନା । କାରଣ ଅତୀତ କେବେ ଫେରେନା । ଗାଁକୁ ଅତୀତ ଆଉ ଫେରିବନି । କିମ୍ବା ତାଙ୍କର ଅତୀତ ସେ ଦିନକୁ ଆଉ ପାଇବେନି ।

ତେଣୁ କବିତାର ଶେଷ ଭାଗ ନିଶ୍ଚିତ ଭାବେ ସ୍ମୃତିର ଯନ୍ତ୍ରଣା । କବିଙ୍କ ପ୍ରାଣରେ କିଛି ହଜେଇ ଦେଇଥିବାର ଅବଶୋଷ । ଏ ଯନ୍ତ୍ରଣା ଭଲ ପାଇବାର । ଯା'କୁ ଭଲ ପାଇଥିଲେ, ଯା' ସାଥିରେ ଖେଳିଥିଲେ ସେ ହଜିଯାଇଛି । ଆଉ ଆସିବେନି । ସେମାନେ ଆଜି ସବୁ ସ୍ମୃତି । କବି ମାନସରେ କାରୁଣ୍ୟର ହିଲ୍ଲୋଳ ସୃଷ୍ଟି କରୁଛନ୍ତି । ସେମାନେ ଆଜି ଆଉ ବର୍ତ୍ତମାନ ନୁହନ୍ତି- 'ଜୀବନର ପ୍ରତିଧ୍ୱନି' ଶୁଣାନ୍ତିନି । ସେମାନେ ଆଜି ଅତୀତ । କବିଙ୍କ ପ୍ରାଣରେ ସେଦିନର ପ୍ରତିଧ୍ୱନି ତୋଳନ୍ତି । ଏମାନେ ବର୍ତ୍ତମାନକୁ ହାହାକାରମୟ କରନ୍ତି ।

"ନିଶବ୍ଦ ଏ ବେଦନାର ସ୍ତିମିତ ...ଏ ଅଛିନ୍ନତା ସମୁଦ୍ରର ସ୍ଥଗିତ ମୁହୂର୍ତ୍ତି
'ଅତୀତର ସ୍ମୃତି ସବୁ ଯେମାନେ ଏ ଦିନାନ୍ତର ସୀମାର ସେପାଖେ
ଆଜି କଣ ଛୁଡ଼ା ହୋଇ ଏ ପାଖର ଏହି ବାଲି, ସିଡ଼ି ଆଉ ଶୀର୍ଣ୍ଣ ଏହି
ଦେହର ସୀମାରେ
ସେମାନେ ଶୁଣନ୍ତି କଣ ଜୀବନର ପ୍ରତିଧ୍ୱନି ?

ଅତୀତର ସ୍ମୃତି ମନକୁ ବେଦନା ବିଧୁର କରେ । ଅତୀତର ଅସ୍ପଷ୍ଟ ସ୍ମାରକୀ ମନକୁ ଆନ୍ଦୋଳନ କରେ । ମାତ୍ର ଏଇଠାରେ ଏ ଚେତନା ସୀମିତ ନୁହେଁ । ଏହା କେବଳ ଆବେଗପ୍ରବଣତା ନୁହେଁ । ଯା, ଆମେ ଗୋଲ୍ଡସ୍ମିଥ୍‌ଙ୍କ 'ଡେଜାର୍ଟେଡ୍ ଭିଲେଜ୍' କବିତାର ଅନେକ ଅଂଶରେ ପାଉ । ଏଠାରେ ଗ୍ରେ'ଙ୍କ ଭାବଗମ୍ଭୀର ଆବେଗର ସୂଚନା ମିଳେ । ମାତ୍ର ସବୁଠାରୁ ବଡ କଥା ହେଉଛି ଏହି ଆବେଗପ୍ରବଣତାରେ ଭାସି ନ ହୋଇ ଆମକୁ ସମୟର ଚିରନ୍ତନତା ବିଷୟରେ ସୂଚନା ଦିଏ ।

ତେଣୁ ଅତୀତର ସ୍ମୃତି, ଗାଁର ସ୍ମୃତି ଦୃଷ୍ଟିକୋଣର ପ୍ରଶ୍ନ ତୋଳେ । ଜୀବନର ପାର୍ଥିବ ରୂପ କବିଙ୍କ ଆଗରେ ଦେଖାଦିଏ । ଜୀବନର ହାରଜିତ, ଆଶା, ବ୍ୟର୍ଥତା ପରେ ଯେତେବେଳେ ଦେହ ଅନ୍ତିମ ପ୍ରହର ଯୋଚି ଆସେ ସେତେବେଳେ ଏଇ ଗାଁର ପରିଚିତ ମାଟି, ତାର ସ୍ନେହ, ସୌନ୍ଦର୍ଯ୍ୟ କୋଳରେ ଶେଷ ନିଶ୍ୱାସ ଛାଡ଼ିବା ବେଳେ, ଏ ନିଘର ଭଲପାଇବା, ଏ କୁହୁଡ଼ି, ଓ ହଳଦି ବସନ୍ତର ରୂପ ଚହଟି ଉଠେ । ମଣିଷ ତା ଗାଁ ସହ ଏକ ହୁଏ । ଦୂର ବିଦେଶ ହୁଏତ ପ୍ରତିପତ୍ତି ଦିଏ, ଅର୍ଥଦିଏ ମାତ୍ର ଏ ମମତାକୁ ଛଡ଼ାଇ ପାରେନା । ମନ ଘୁମୁରି ଘୁମୁରି ତା'ର କୋଳକୁ ଫେରିଯିବାକୁ ଚାହେଁ । ଯେମିତି ସୁରେନ୍ଦ୍ର ମହାନ୍ତିଙ୍କ 'ନିଃରଙ୍ଗ ଆକାଶ'ର ନାୟକ ତା ଗାଁକୁ ଫେରି ଯାଇଥିଲା । 'ସିଡ଼ୁଆ' ଏହି ମମତାର ଛବି । ଆଉ ବହୁଦିନ ପରେ ସମୟର ଏତେ ପରିବର୍ତ୍ତନ ପରେ ବି ଏଇ ମାଟିର ଡାକ, ଝିଙ୍କାରୀର ଡାକ ହୋଇ ଶୁଭେ । କୁହୁଡି ହୋଇ ଆଖିକୁ ଧୂଆଁ କଳା କରିଦିଏ । କଲିଙ୍କି ପରି କାଲ ଗାଁକୁ, ମନକୁ ଖାଉଥିଲେବି ପଛକୁ ଚାହିଁବାକୁ ପଡ଼େ । ଭଲ ପାଇବାର ଅଭାବ ନିକାଶ କରିବାକୁ, ପୁଣି ତାର ଉଷ୍ମତାକୁ ଉପଲବ୍ଧି କରିବାପାଇଁ — ଯେମିତି --

"ମୁଁ ଫେରି ପଛକୁ ଚାହେଁ
କେତେ ଝଡ଼ କାକର ଭିତରେ

ଛପ୍ସ ହୋଇ ଯାଇଥିବା କେତେ ଭଲ ପାଇବାର ହିସାବ
ଜାକାଶ କେତେ ସତ୍ତା କେତେ ଜଣର ସମସ୍ତ ।"

ଏଠାରେ ସ୍ମୃତି, ପ୍ରକୃତି ଆଉ ସମସ୍ତ ସବୁ ଏକାକାର ହୋଇ କବିଙ୍କ ମନକୁ ଭୁଲି ଯାଇଛନ୍ତି । ଏହି ମିଶ୍ର ଚେତନା ଯାହା ଜୀବନର ଅନ୍ୟ ଏକ ଛବି ତାର ପ୍ରତୀକ ଏଇ ସିଡ଼ୁଆ ।

କବିଙ୍କ ମନ 'ବିଦେଶୀ କବିର ଆତ୍ମା' । ଧାନ ମଣ୍ଡିକରେ ସେ ଫେରୁଥିବ ଖୋଜି ଖୋଜି 'କାମନାର ଦେହ', ଭଲ ପାଇବାର ଦେହ' । ଆଉ ଏଇ ଭଲପାଇବା ହିଁ ଜୀବନର ମୂଳ । ସୃଷ୍ଟିର ମୂଳ । ଏହାଣ ପାଇଁ ଏ ପୃଥିବୀ 'ଏତେ ରୂପବତୀ' । ପଉଷର କୁହୁଡ଼ି ବା ଜ୍ୟେଷ୍ଠର ଦ୍ୱିପ୍ରହର ଭିତରେ ହିଁ ସ୍ମୃତି ହୋଇ ଏ ଭଲ ପାଇବା ଜଳୁଉଠେ "ପୁଂଜିଭୂତ କାମନାର ଯୁଗ ଯୁଗ ସ୍ମୃତି କେତେ ଏ ଗାଆଁର ପୁରୁଷ ପୁରୁଷ" ।

କବିଙ୍କ ଆଗରେ ତେଣୁ ଦୁଇଟି ପୃଥିବୀ । ଗୋଟିଏ ସ୍ମୃତିର, ଗୋଟିଏ ବାହ୍ୟ ପ୍ରକୃତିର । ସ୍ମୃତିର ପୃଥିବୀ ଭଲପାଇବାର ଚରମ । ଏହା ଏକ ସମୃଦ୍ଧିର, କାମନାର ପୃଥିବୀ । ମାତ୍ର ଏହାକୁ ଘେରି ରହିଛି ବାସ୍ତବ ପୃଥିବୀଟିଏ । ଏହା ସମୟର କ୍ରୂର କୋଳରେ କ୍ଷିପ୍ରଦିଷ୍ଟ । ଏହା ମୃତ୍ୟୁ ଶୀତଳ । ଏହି ସମୟର ଶିକାର ସମସ୍ତେ; କବି ନିଜେ ମଧ୍ୟ । ତଥାପି ଏ ଛପ୍ସ ଭିତରେ ତାଙ୍କୁ ବଞ୍ଚାଇ ରଖିଛି ତାଙ୍କ ଭଲପାଇବା । ତାଙ୍କ 'ସ୍ମୃତିର ବେଦନା' ମାତ୍ର ତାଙ୍କୁ ଘେରି ନାଚୁଛି "ସମୟର ହାହାକାର ମୃତ୍ୟୁର ଏ ଚରମ ଶୂନ୍ୟତା "

ଏହି ଦୁଇ ପୃଥିବୀର ସଂଘର୍ଷ ହେଉଛି ଏ ସିଡ଼ୁଆ । ଏକଦିଗରେ ସେ ପ୍ରକୃତିର ସବୁ ସୌନ୍ଦର୍ଯ୍ୟର ଧାତ୍ରୀଟିଏ, ଅନ୍ୟଦିଗରେ ସେ କାଳର ପ୍ରତୀକ । ଉପରୋକ୍ତ ଦୁଇ ପୃଥିବୀ ପୁଣି ମନ ଆଉ ବାହ୍ୟତାର ଚବତବ

ଯୋଗସୂତ୍ରଟିଏ । ମାତ୍ର ଏହା ଚରମ ପରିଣତି ନୁହେଁ ।·ଏହା ଅଭିଜ୍ଞତା । ମାତ୍ର ପରିଣତ ପକ୍ୱତା ନୁହେଁ । ଏ ଅଭିଜ୍ଞତା ହୁଏ ତ କବିଙ୍କ ପ୍ରାଣରେ ହତାଶା ଭରିଛି । ଭରିଛି ଶୂନ୍ୟତା, ବିବର୍ଣ୍ଣତା, ତାଙ୍କ ଆଖିରେ ଆକାଶ ବିବର୍ଣ୍ଣ ହୋଇଛି, ମାତ୍ର ଏହି ଶୂନ୍ୟତା ଭିତରେ ଯେମିତି ଆଉ ଗୋଟିଏ ପୃଥିବୀର ଉଦୟ ହେଉଛି । ମୃତ୍ତିଦଗ୍ଧ, ମୃତ୍ୟୁ-ଛିନ୍ନ, କ୍ଳାନ୍ତ ଶ୍ରାନ୍ତ ମନ ଏକ ନୂଆ ସତ୍ୟର ସନ୍ଧାନ ପାଏ । ଏ ସମସ୍ତ ଅପରିବର୍ତ୍ତନୀୟ ପରିବର୍ତ୍ତନତା 'ଅର୍ଥନ୍ୟାସ' ପାଏ । ସ୍ପଷ୍ଟ 'ଦି ପାଖର ଧଳା ଷୀର କୋଳି ଫୁଲ' ନୂଆ ଦିଗନ୍ତର ସୂଚନା ଦିଏ ଏହା ଯେମିତି ଏହି ପୃଥିବୀ ଭିତରେ ହିଁ ପୃଥିବୀକୁ ଉତ୍ତରି ଯିବାର ଚେତନା ।

"ଶୂନ୍ୟ ଏହି ବେଦନାର ବିବର୍ଣ୍ଣ ଏ ଗୋଧୂଳିରେ, ଏ ପୃଥିବୀ ଏ ମ୍ଳାନ ଆକାଶ
ଆଉ ମୋର ସାମ୍ନାରେ ଏହିବାଟ ଦିପାଖର ଏହି ଧଳା ଷୀରକୋଳି ଫୁଲ
ସ୍ମୃତିର ବେଦନା ଅବା ଅଜ୍ଞାତର ଅଶାରେ ବା ଗତି ଅଉ ଆସନ୍ନ ମୃତ୍ୟୁରେ
ପାଏ ପୁଣି ଅର୍ଥନ୍ୟାସ ଆକାଶ ଓ ଏ ପୃଥିବୀ
ଏହି ମୋର ଦେହ ତଳେ ଏହି ଝଡ଼ା ପତ୍ର ଆଉ
ଏହି ବାଟ ଦିପାଖର କଂଟା ଆଉ ଷୀର କୋଳି ଫୁଲ ।"

ତାଙ୍କ ଦେହ ତଳେ 'ଝଡ଼ା ପତ୍ର' ପୁଣି 'ଷୀର କୋଳି ଫୁଲ ଜୀବନ୍ୟାସ ପାଏ । ଅତୀତ, ସ୍ମୃତି କାଳ ଭିତରେ କାଳୋତ୍ତୀର୍ଣ୍ଣ ହୁଏ । ଏହାହିଁ ତୃତୀୟ ପର୍ଯ୍ୟାୟର ଚିନ୍ତାଧାରା । ଏଥିରେ ସମସ୍ତ ସ୍ୱୀକୃତି ପରେ ସବୁକୁ ଟପିଯିବାର ସୂଚନା । ଏକ ମହାସତ୍ୟର ସମ୍ଭାବନା ।

ଏହାହିଁ ମୋଟାମୋଟି କବିତାର ଚିନ୍ତାଧାରା ଏହା ତିନୋଟି ପର୍ଯ୍ୟାୟରେ ପ୍ରକାଶିତ । ଏବଂ ସମସ୍ତ 'ସିଢ଼ୁଆ'କୁ କେନ୍ଦ୍ର କରି । ପ୍ରଥମ ପର୍ଯ୍ୟାୟରେ ଏହା ଏକ ସ୍ଥିତି । ବୈଚିତ୍ର୍ୟହୀନ ସାଧାରଣ ନଈଟିଏ ମାତ୍ର କବିଙ୍କ ସହ ଏକାନ୍ତ । ଦ୍ୱିତୀୟ ସ୍ତରରେ ଏହା ଅତୀତ ଓ ସ୍ମୃତି, ଏବଂ ତୃତୀୟରେ ଏହା

ଜୀବନାନୁଭୂତିର ନିର୍ଯ୍ୟାସ । ତେଣୁ ଅନୁଭୂତି ଆଉ ଆବେଗର ସେଉଁ ବିଭିନ୍ନ ସ୍ତର ଏଥିରେ ଉନ୍ମୋଚିତ ହୁଏ ତାହାହିଁ ଏ କବିତାର ବିଶେଷତ୍ୱ । ପିତୃଆ କେବଳ ଅତୀତର ସ୍ମୃତି ନୁହେଁ, ଚଞ୍ଚଳ ପ୍ରକୃତି ନୁହେଁ, ପଳାଇଯିବାର ମାଧ୍ୟମଟିଏ ନୁହେଁ । ଏହା ହୋଇଥିଲେ ଏହା ସାଧାରଣ ସେଂଟିମେଂଟାଲ୍ ରୋମାଂଟିକ କବିତାଟିଏ ହୋଇଥା'ନ୍ତା । ମାତ୍ର ଏ ଅନୁଭୂତି ସହ କାଳ/ମୃତ୍ୟୁ ଚେତନା ଜଡିତ ହୋଇ-ଗୋଟିଏ ଚିରନ୍ତନତା ଆଡ଼କୁ ବିକାଶିତ ହେଉଥିବାରୁ ଜୀବନର ଏକ ଗମ୍ଭୀର ଅର୍ଥ ଭରେ । ଏହା ଜୀବନର ଯନ୍ତ୍ରଣା ଓ ରହସ୍ୟକୁ ପ୍ରକାଶ କରେ ନାହିଁ, ତାର ସାମଗ୍ରୀକତାକୁ ଗ୍ରହଣ କରିଥାଏ । 'ଧାନର ମହକ', 'କୁହୁଡ଼ି, ଅନ୍ଧାର' ଏହି ସବୁର ସୂଚକ । ଏହା ଯେମିତି ମାଟି ଓ ମଣିଷର ସମ୍ବନ୍ଧ । କାଳର କୋଳରେ ଚିର ଅସ୍ପଷ୍ଟ ପୂର୍ଣ୍ଣତା ।

ଏ କବିତା ତେଣୁ ଆବେଗର ବିଭିନ୍ନ ସ୍ତରକୁ ଛୁଇଁଯାଏ । ଏହାର ପ୍ରକୃତି ବର୍ଣ୍ଣନା ଖାଲି ପରିବେଶ ସୃଷ୍ଟି କରେନା । ଏହା କବିତାର ଚେତନା ସହ ଅଙ୍ଗାଙ୍ଗୀ ହୋଇ ପ୍ରତୀକଧର୍ମୀ ହୋଇଯାଏ । ତିନୋଟି ଭାଗରେ ବିଭକ୍ତ ଏ କବିତା ସ୍ଥିତି, ସ୍ମୃତି ଓ ଶେଷରେ ମୃତ୍ୟୁ / ଓ ଜୀବନର ଏକ ମାର୍ମିକ ସମ୍ପର୍କ ତୋଳେ । ଏହାର ଭିତରେ ଫୁଟି ଉଠେ ନୈରାଶ୍ୟ, ଶୂନ୍ୟତା ଓ ନିଃସଙ୍ଗତାବୋଧ । ଏବଂ ଶେଷରେ ଏ ସବୁର ମିଶ୍ରଣ ଜୀବନର ଗ୍ରହଣ ।

ଏହା ଗୁରୁପ୍ରସାଦଙ୍କ ଏକ ସଫଳ ସୃଷ୍ଟି । କୌଣସି ପଦାଙ୍କ ଅନୁକରଣ ନ କରି ଏହା ତାଙ୍କ ଆବେଗର ବିଶ୍ୱସ୍ତ ଉଦ୍ଗିରଣ । ଏହାର ଭାଷା, ଛନ୍ଦ ନିଜସ୍ୱଭାବେ ଗୁରୁପ୍ରସାଦୀୟ, ଏକ ପ୍ରକାରସ୍ୱାଚ୍ଛନ୍ଦ୍ୟ, ଏଇ ପିତୃଆର ଧୀର ପରି-ଭାଷାରେ ଅନୁରଣିତ । ଆଧୁନିକ ଜୀବନର ବିଚ୍ଛିନ୍ନତାବୋଧ ଅତି ସୁନ୍ଦର ଭାବେ ଏଥିରେ ପ୍ରତିଧ୍ୱନିତ ହେବା ସଙ୍ଗେ ସଙ୍ଗେ ଏହା ଯେମିତି ଏକ ନିଃସଙ୍ଗ ଅହଂର ଅସ୍ପଷ୍ଟ ପୃଥିବୀକୁ ଗ୍ରହଣ କରିବା । ଯନ୍ତ୍ରଣା, ନିଃସଙ୍ଗତା ଭିତରେ ତିଳ ତିଳ ଜଳି ଶେଷରେ ଏହି ଜ୍ୱଳନକୁ ଜୀବନ ଭାବେ ଗ୍ରହଣ କରି ସତ୍ୟକୁ ଅନୁଭବ ଯିବା । ● ସୌମ୍ୟେନ୍ଦ୍ର ବାରିକ

ପଶପୂର୍ଣ୍ଣ 'ବୈତ୍ର' ହାତ ପାଆନ୍ତାରୁ ଖସିଯାଏ, ରୋମାଂଟିକ୍ ଚେତନାଟି ପାଣି ଓ ମାଟି ଖୋଜି ଖୋଜି "ବାଲିର ଅନ୍ଧାର ଭିତରେ" ହଜିଯାଏ ।

ବିବର୍ଜିତ ଅପନ୍ତ୍ୟ ବାଲୁସ୍ତପ ଭିତରେ "ନୀଳମା" ବକ୍ଷବଂଧନୀ ଖୋଲି ଯେମିତି ନାଚଉଠେ । ସମସ୍ତ ପ୍ରତି ସଚେତନ ହୋଇ କବି ଭାବନ୍ତି ଏ ବୋଧହୁଏ "ନୀଳମା" ଏକ ସାମୟିକ ସମ୍ମୋହନ, ନିର୍ଜନ ବୈଶାଖୀ ରାସ୍ତାର ଖଣ୍ଡେ ଧଳା ମେଘ ଯାହା ଭିତରେ ଆଶା, ପ୍ରାପ୍ତି ଓ ଶୂନ୍ୟତାର ଭେଲିକବାଜି, ସଭାବୃ, ରାଜନୀତି ଅର୍ଥନୀତି ଓ ଜାଗରଣର ଆୟୋଜନ । ଏ ସମସ୍ତ ଭେଲିକ ସାମ୍ନାରେ ମୁଖାପିନ୍ଧା ନାୟକର ପଦଯାତ୍ରା । ସେ ଦ୍ଵନ୍ଦ୍ଵମୟ ସ୍ଥିତିରେ ସ୍ଥବିର, ଗହଳରାସ୍ତାରେ ପାଦଥାଇ ମଧ୍ୟ ଅଥବା, ଶବ୍ଦ ଥାଇ ମଧ୍ୟ ଉଦାସ ଅଂଧାର ବଙ୍ଗଳାର ମହଳବରେ ସେ ହତବାକ୍ । ସବୁ ସମ୍ଭାବନା ଯେମିତି କ୍ଷଣସ୍ଥାୟୀ ଗଜୁରା ସ୍ଵପ୍ନ । ସେ ସ୍ଵପ୍ନରେ ପତ୍ରଝଡ଼ା ମୁହୂର୍ତ୍ତ ମିଳେଇଯାଏ ମହାଶୂନ୍ୟରେ । ପତ୍ରଝଡ଼ାମୁହୂର୍ତ୍ତ ଭିତରେ ଦେହ ଖୋଜିଯାଏ ଦେହ, ପ୍ରାଣ ବି ଖୋଜିଯାଏ ଦେହ । ପ୍ରାଣ ଓ ଦେହର ଅନ୍ଵେଷା ଭିତରେ କ୍ରମଶଃ ଅବକ୍ଷୟ ଘାଣିଯାଏ । ସେ ଯେମିତି ବି ଏକ ନାଟକର ଦୂତ । ଏଂଟିରୋମାଂଟିକ୍ ଚେତନାରେ ଶରବ୍ୟ ହୋଇଲକ୍ଷ୍ୟକରେ ନାୟିକା ମନରେ ଫମ୍ପା ମେଘର ଭେଲିକ । ସେଠି ଶାମୁକା ଭିତରେ ନାହିଁ ସ୍ଵପ୍ନ ବାଲୁଚର ପାଏ ନାହିଁ ଦୂର ନୀଳ ସାଗରର ସ୍ପର୍ଶ । ଯୌନ ବିକାରଗ୍ରସ୍ତ ସମ୍ଭୋଗ ସାମଗ୍ରୀ ସାମ୍ନାରେ ହତମନା ଓ ପରାସ୍ତ କ୍ଲୀବତ୍ଵର ମର୍ମଗତ ଦେହଜ ଯାତନା । ସେ ଗୋପନୀୟ ବ୍ୟଭିଚାରର ଦ୍ରଷ୍ଟା,ଓ କାମନା ଜର୍ଜରିତ କ୍ଲୀବତ୍ଵର ଏଂଟିହିରୋ ।

କହିତ ଗୋଧୂଳିରେ କାବ୍ୟନାୟକ ପୁଂଜୀଭୂତ ଅପମାନ ଓ ପ୍ରାଣର ବେଦନାରେ ନଷ୍ଟ ସ୍ଥିତିକୁ ମର୍ମେ ମର୍ମେ ଅନୁଭବ କରନ୍ତି । ଜୀବନର ମୂଲ୍ୟ ତଳେଇ ଯାଇଛି । ସବୁ ଅସାରତା ଭିତରେ ନାୟିକା ପ୍ରତି ତାର ଉଦଗ୍ର ଅଭିଳାଷମୟ ପ୍ରତୀକ୍ଷା ।

ଗୁରୁପ୍ରସାଦଙ୍କ କାବ୍ୟ ପୁରୁଷଟି ବେଦନାଦଗ୍ଧ କାରୁଣ୍ୟର ଝଂକାର,

ସଂକ୍ରଣାଦଗ୍ଧ- ନିଷ୍ପ୍ରଭ-ଉଦାସ ଘେରା ଅବକ୍ଷୟୀ ଜୀବନର ନୀରବ ଦ୍ରଷ୍ଟା । କାବ୍ୟ ନାୟକଙ୍କି ଅନାବୃତ ହେବାଲାଗି କରୁଣ କାମନାରେ ପାଠକର ଦୃଷ୍ଟି ଆକର୍ଷଣ କରେ । ନ୍ୟୂନ ଭାବମୁକ୍ତ ଯୁଗ ସଂକ୍ରଣାର କ୍ଷୁଧା, ଅନ୍ୱେଷା, ଅସମର୍ଥତାର ଆହ୍ୱାନ ଭିତରେ ନାୟକ ଆତ୍ମ ଗୃହ ପାଖରେ ଜଡ଼ତା ଗୁଣିଦିଏ । ସ୍ଥିତାବସ୍ଥାର ମୂଲ୍ୟବୋଧ ବିରୁଦ୍ଧରେ କାବ୍ୟପୁରୁଷର ସ୍ୱର ମ୍ଳାନ ବରଂ ସ୍ଥିତାବସ୍ଥାର ନିଷ୍କରୁଣ ନିର୍ଯାତନା ନିକଟରେ ଦାୟୀନୀୟ ଆତ୍ମସମର୍ପଣ । ସେଇଥି ପାଇଁ ନୈରାଶ୍ୟ ଓ ବେଦନା ବୋଧରେ ସେ ଚରନ୍ତନ ଶରବ୍ୟ ଯଦି ଜୀବନ ସଂଗ୍ରାମରେ କ୍ଷତ ବିକ୍ଷତ କାବ୍ୟନାୟକ ଦୈହିକ କାମନାର ଉଦଗ୍ର ଅଭିଳାଷକୁ ବିଶୁଦ୍ଧ ଉତ୍ସର୍ଗୀକୃତ ପ୍ରଣୟାନୁଭୂତି ମଧ୍ୟରେ ପରିବ୍ୟାପ୍ତ କରି ପାରିଥାଆନ୍ତା ହୁଏତ ସ୍ଥିତାବସ୍ଥାର ଗଣ୍ଡି ଓ ତତ୍କାଳୀନ ମୂଲ୍ୟବୋଧ ନିକଟରେ ପାଳସଖିନ ଜୟଯାତ୍ରାରେ ଦେହରୁ ଅଦେହୀ ହୋଇ ଆତ୍ମ ପରମ୍ପରାର ଏକ ଭିନ୍ନ ଅବକ୍ଷୟୀ ରୂପ ଗଢ଼ି ତୋଳି ଥାଆନ୍ତା ।

କବି ଗୁରୁପ୍ରସାଦଙ୍କ ପ୍ରତିଭାରୁ ସଦ୍ୟ ପ୍ରସ୍ଫୁଟିତ ଫୁଲଟିଏ ଆଉ ଏବେ ଖୋଜିଲେ ମିଳେନା । ସେ ଭେଣାଭଂଗା ଚଢ଼େଇ ସ୍ୱରରୁ ଭିନ୍ନ ଋତୁରେ ଭିନ୍ନସ୍ୱରର ଗୀତଟିଏ ଏ ମାଟିରେ ଭାସିଯାଉ ।

**ନିତ୍ୟାନନ୍ଦ ପତି**

# ଚଂପାଫୁଲ

ଚଂପାଫୁଲ ମହକରେ ବାଟ ଭୁଲି ସମୁଦ୍ରର ଢେଉ
ଆସିଥିଲା କୂଳ ଡେଇଁ ଶୁଖିଥିଲା ଉପନଈ ଛାତି
ପଥର ତରଳିଥିଲା ମଶାଣିର ଭୂତ ପ୍ରେତ ଛାଡ଼ି
ରଜବତୀ କନ୍ୟା ଲାଗି ଯୋଗୀଥିଲା ମଦନରେ ମାତି ।

ଚଂପାଫୁଲ ହାତେ ଧରି ମନାସିଲା ଯାଦୁକରୀ ଥରେ
ପଥର ପାଲଟି ହେଲା ରଜାପୁଅ, ହାଡ଼ ସବୁ ହେଲା ମୁକ୍ତାଫୁଲ
ରଜାଝିଅ ବେଣୀଫୁଲ ଖସିଗଲା ଧୂଏ ଧୂଏ ହସି
ଗୋଟିଏ ଫୁଲରେ ପୁଣି ହେଲା କୋଟି ମନିଷର ମୂଲ ।

ଚଂପାଫୁଲ ମହକରେ ଏତେ ସେ ଯେ ଦାରୁଣ କୁହୁକ
ରକ୍ତେ ଯାଏ ନିଆଁ ଲାଗି ଛାତି ଥରେ ନିଶ୍ୱାସରେ ନିଆଁ
ଛାତି ଥରେ ନିଶ୍ୱାସରେ ନିଆଁ ସେ ଯେ ଦେହେ ଦେହେ ବିଜୁଳି ଚମକ
ବିଜୁଳି ଚମକ ସେ ତେ ବଣ ନିଆଁ, ସବୁ ଯାଏ ଛିନ୍ନ ଭିନ୍ନ ହୋଇ,
ପୃଥିବୀ ଛାତିରେ ଲୋଟି ପୋଡ଼ିଯାଏ କଳିଯାଏ ସବୁ
ମାଂସପିଣ୍ଡେ ଫୁଲ ହୋଇ ମନ ପଡ଼େ ରୋମାଞ୍ଚରେ ଶୋଇ ।

ସାଧାରଣ ଅର୍ଥରେ 'ଚଂପାଫୁଲ'କୁ ସେମାଣ୍ଟିକ୍ ଚେତନା, ସ୍ନାୟୁ ଉତ୍ତେଜକ (ସେନସୁଆଲ) ଶକ୍ତି କିମ୍ବା ଦେହ ବା କାମନାର ପ୍ରତୀକ ରୂପେ ଗ୍ରହଣ କରାଯାଇପାରେ । ଯାହାଦ୍ୱାରା କ 'ଚଂପାଫୁଲ' ଦେହ,ମନ ଆଉ ନିଶ୍ୱାସରେ ନିଆଁ ଜାଳିଦିଏ,ବିଜୁଳିଚମକ ଖେଳାଇ ଦିଏ । ପ୍ରମାଣ ସ୍ୱରୂପ କବିତାଟିର ଶେଷଛଅଧାଡ଼ି ଗ୍ରହଣ କରାଯାଇ ପାରେ ।

କେବଳ ନଶ୍ୱର ମାନବ କାହିଁକି, ଚମ୍ପାଫୁଲ 'ମହକ'ରେ ସମୁଦ୍ର ଢେଉ ବାଟ ଭୁଲି ଆସେ, ଚୂର୍ଣ୍ଣଗର୍ଭା ନଦୀ ଶୁଷ୍କ ହୋଇଯାଏ । ପଥର ତରଳି ଯାଏ, ଯୋଗୀ ନିଜର ମୌଳିକ କାର୍ଯ୍ୟ ପରିତ୍ୟାଗ

କରି ରଜବତୀ କନ୍ୟା ସଙ୍ଗ ରତିକ୍ରିୟାରେ ମଜ୍ଜି ରହେ । 'ପଥର'କୁ ଏଠାରେ ଶ୍ମଶାନବାସୀ ଯୋଗୀର ହୃଦୟ ବା ପ୍ରବୃତ୍ତି ସହିତ ତୁଳନା କରି ବିଚାର କଲେ ଅର୍ଥ ସ୍ପଷ୍ଟ ହୁଏ । ଅର୍ଥାତ୍ ଯେଉଁ ଯୋଗୀ-ପୁରୁଷର କାମନା ହେଉଛି ଭୂତପ୍ରେତବିଜଡ଼ିତ ସ୍ଥାନରେ ଯୋଗ ସାଧନା, ସେ 'ଚମ୍ପାଫୁଲ ମହକ'ରେ, କାମନାର ତୀବ୍ର ଜ୍ୱାଳାରେ ବା ଦେହ ବାସନାର ବଶବର୍ତ୍ତୀ ହୋଇ (ରଜବତୀକନ୍ୟା ପାଇଁ) ସବୁ କିଛି ପରିତ୍ୟାଗ କରି ରତିକ୍ରିୟାରେ ନିମଗ୍ନ ରହିବାକୁ କୁଣ୍ଠା ପ୍ରକାଶ କରେନାହିଁ । ଏ ପ୍ରସଙ୍ଗରେ ଆମର ସ୍ମରଣ ହୁଅନ୍ତି ଜରତା ବେଶ୍ୟା ଓ ଋଷ୍ୟଶୃଙ୍ଗ ମୁନି ।

କବିତାର ବିଷୟ ପର୍ଯ୍ୟାୟରେ ଆମେ ଭେଟୁ ଅନ୍ୟ ଏକ ଲୋକକଥାକୁ, ତାହା ମଧ୍ୟ ଦେହଜ ପ୍ରେମକୁ ନେଇ ଉଦ୍ଭାସିତ । ଲୋକକଥାଟି ହେଲା— କାଉଁରୀ କାମାକ୍ଷା ଦେଶର ରୂପସୀମାନେ ସୁନ୍ଦର ଯୁବକମାନଙ୍କୁ ଯାଦୁବିଦ୍ୟା ବଳରେ ଦିବସରେ 'ମେଣ୍ଢା'ରେ ଏବଂ ରଜନୀରେ 'ଭେଣ୍ଡା'ରେ ରୂପାନ୍ତରିତ କରି ସେମାନଙ୍କ ଦେହଜ କ୍ଷୁଧାକୁ ତୃପ୍ତି କରାଇଥାଆନ୍ତି । ଏହି କଥାକୁ ଗୁରୁପ୍ରସାଦ ପରୋକ୍ଷ-ଭାବେ କହୁଛନ୍ତି ଯେ, ଯାଦୁକରୀ ବା ନାରୀ ସେଇ ଉତ୍ତେଜନାମୟ ବା ମାନ୍ତ୍ରିକ ଶକ୍ତି ପ୍ରୟୋଗକଲେ 'ପଥର' ରାଜପୁତ୍ରରେ ଏବଂ ହାଡ଼ ମଧ୍ୟ ମୁକ୍ତାଫୁଲରେ ପରିଣତ ହୋଇଯାଏ । ଆଉ ଏକ ଅତି ପରିଚିତ ଲୋକକଥାନୁସାରେ, ରଜାଝିଅର ବେଣୀରୁ କେବଳ ଗୋଟିଏ ମାତ୍ର 'ଚମ୍ପାଫୁଲ' ଝରିପଡ଼ି ସ୍ରୋତରେ ଭାସିଗଲେ ତାହା କୋଟି କୋଟି ମଣିଷଙ୍କ ହୃଦୟରେ ଆଲୋଡ଼ନ ସୃଷ୍ଟି କରେ ।

ସୌମ୍ୟେନ୍ଦ୍ର ବାରିକ ଏ ପ୍ରସଙ୍ଗରେ ଆଲୋଚନା କରିବାକୁ ଯାଇ କହୁଛନ୍ତି ଯେ, ଗୁରୁପ୍ରସାଦ 'ଦେହ ଓ ଅଦେହ'ର କବି, ଏବଂ

'ଚଂପାଫୁଲ୍' ଓ ତାଙ୍କର ଅନ୍ୟ କେତେକ କବିତାରେ ଏକ 'ଦୈତ୍ୟ ଓ ଅବେଦନ'ର କଥା କୁହା ଯାଇଛି । କିନ୍ତୁ କବିତାଟିକୁ ଆଉ ଏକ ଦୃଷ୍ଟିକୋଣରୁ ବିଚାର କରାଯାଇ ପାରେ । 'ଚଂପାଫୁଲ' କବି ମହାଶୟଙ୍କ ଦୃଷ୍ଟିରେ ଏକ ଅଜ୍ଞାତ, ଅଗମ୍ୟ ଓ ଆକର୍ଷଣୀୟ ପଦାର୍ଥ (Lure of the unknown, unreachable or the impossible) । କବିତାର କେତେକ 'ଶବ୍ଦ' ଏବଂ 'ପାଦ'ରୁ ଏହାର ଯଥାର୍ଥତା ଉପଲବ୍ଧି ହୋଇଥାଏ ।

'ଚଂପାଫୁଲ ମହକ' ଏତେ ତୀବ୍ର ଓ ଉତ୍କଟ ଯେ ସମୁଦ୍ରର ତେଜ କୂଳ ଲଙ୍ଘନ କରି ଆସୁଛି । ସମୁଦ୍ରର ତେଜ ଦାହିକା ଶକ୍ତିର ଉତ୍ତେଜନାରେ ଯଦି କୂଳ ଲଙ୍ଘନ କରି ଆସିଥାଏ ତେବେ ଏହାର ବ୍ୟାପ୍ତି ଖୁବ୍ ସୀମିତ ଓ ସଂକୁଚିତ । ସମୁଦ୍ର ସବୁଶକ୍ତିର ଆଧାର, ଅର୍ଥାତ୍ ସତ୍ୟ ଶିବ ସୁନ୍ଦରର ପ୍ରତୀକ । ଏଣୁ ଦୈହିକ ପ୍ରେମର ଆକର୍ଷଣରେ ସେ କଦାପି ଉତ୍ତେଜିତ ହୋଇ ନପାରେ । ସେଇପରି 'ହାଡସବୁ ହେଲା ମୁକ୍ତାଫୁଲ', 'ଦାରୁଣ କୁହୁକ', 'ବିଜୁଳି ଚମକ', 'ବଣ ନିଆଁ', 'ସବୁ ଯାଏ ଛିନ୍ନହୋଇ', 'ପୃଥିବୀର ଗୁମ୍ଫରେ ଲେଟି', 'ପୋଡ଼ି ଯାଏ ଜଳିଯାଏ ସବୁ', 'ମାଂସ ଫୁଟେ ଫୁଲ ହୋଇ, ମନପଡ଼େ ପ୍ରେମାଗ୍ନିରେ ଶୋଇ'— ଶବ୍ଦଗୁଚ୍ଛମାନଙ୍କରୁ କେବଳ ଦାହିକା ଶକ୍ତିର ଉତ୍କଟତା ଯେ ଉପଲବ୍ଧି କରିହୁଏ, ଆଉକିଛି ଅନୁଭୂତ ହୁଏ ନାହିଁ, ଏହା କହିଲେ ଅନ୍ୟାୟ ହେବ । ଯେଉଁ ଶବ୍ଦପୁଞ୍ଜ ପ୍ରଥମସ୍ତରର ଅର୍ଥାଗମରେ ସାହାଯ୍ୟ କରିଥାଅନ୍ତି, ସେଇ ସବୁ ଶବ୍ଦଗୁଡ଼ିକ ଅନେକ ସ୍ଥଳରେ ଅନ୍ୟ ଏକ ସ୍ତରର ଅର୍ଥାଗମର ଅପେକ୍ଷା ମଧ୍ୟ ରଖିପାରିଥାନ୍ତି । 'କୁହୁକ' କହିଲେ ଯାହା ବୁଝାଯାଏ

'ତାରୁଣ କୁହୁକ' କହିଲେ ତହିଁର ଉଦ୍ଧାପିତ ସ୍ତରର କଥାହିଁ ସ୍ମରଣକୁ ଆସେ । 'ଝଟୁଲ' କହିଲେ ସାଧାରଣ ଅର୍ଥରେ ଏହା ନିଶ୍ଚୟ 'ଚମକ' ବା 'ଝଲକ' ସୃଷ୍ଟି କରିଥାଏ । କିନ୍ତୁ କବି ମହାନ୍ତି 'ବିଜୁଳି ଚମକ' କହିବାର ତାତ୍ପର୍ଯ୍ୟଟି କ'ଣ ? ସେଇପରି 'ନଅଁ' କହିଲେ ଯାହା ବୁଝାଯାଏ 'ବଣ ନଅାଁ' କହିଲେ କଣ ଏକା ଅର୍ଥ ଜଣାପଡ଼ନ୍ତି କି ? ଏଇଠାରେ ହିଁ ଜଣେ ସଚେତନ ପାଠକ ଦେହ ଓ ଅଦେହର କଥାଗ୍ରନ୍ଥ ଅନ୍ୟ ଏକ ଭିନ୍ନ ସ୍ତର କଥା ଚିନ୍ତାକରି ଥାଏ । ସେ ସ୍ତରଟି ଉପଲବ୍‌ଧି କରିହୁଏ ନାହିଁ କି, କଳ୍ପନା ବି କରି ହୁଏ ନାହିଁ । ଯେ ଭିନ୍ନ ସ୍ତରଟି ହେଉଛି ଅଗଦମ୍ୟ (unreachable), ଅଜ୍ଞାତ (unknown) ପାଇଁ ଆକାଙ୍‌କ୍ଷା । ଯାହାକି ବୁଝି ବୁଝାଇ ହୁଏନାହିଁ । କବିତାଟିର ଅନ୍ତଃସ୍ୱରରେ ଏଇ କଥାଟି ଲୁକ୍‌କାୟିତ ହୋଇ ରହିଥିବା ଭଳି ଅନୁଭବ କରିହୁଏ ।

କବି ଏପରି ଏକ ଅବସ୍ଥା କଥା ଉପଲବ୍‌ଧି କରିଛନ୍ତି ଯେଉଁ ଅବସ୍ଥାରେ କି ପୃଥିବୀ ପୃଷ୍ଠରେ ସବୁ କିଛି ପୋଡ଼ି ଜଳି ଧ୍ୱଂସ ହୋଇ ଯାଇଛି । କିନ୍ତୁ ଠିକ୍ ସେଇ ଅବସ୍ଥାରେ ହିଁ ପୋଡ଼ି ଜଳି ଯାଇଥିବା ସବୁ ମଧ୍ୟରୁ ମାଂସ ଫୁଲ ହୋଇ ଫୁଟି ଉଠୁଛି ଏବଂ ମନ ରୋମାଞ୍ଚରେ ଶୋଇ ପଡ଼ୁଛି । ସେଇ ଅଜ୍ଞାତ ବନ୍ଧୁ/ପୁରୁଷର ସାନ୍ନିଧ ଆଶାରେ ଦେହରେ ଶୀତ୍କାର ସୃଷ୍ଟି ହେଉଛି ଏବଂ ଦେହ ମନ ପବିତ୍ରତା/ସାଧନାର ଶୀର୍ଷସ୍ତରରେ ପହଞ୍ଚିପାରୁନାହିଁ । ଆଲୋଚକ ଅଧ୍ୟାପକ ବାରିକଙ୍କ ମତରେ 'ଚମ୍ପାଫୁଲ' ଯଦି କେବଳ ଦାହିକା ଶକ୍ତିର କଥା କହୁଥାଏ, ତେବେ ରତିକ୍ଲାନ୍ତ ପୁରୁଷର ମନ ରତିତୃପ୍ତି ପରେ ରୋମାଞ୍ଚରେ ଶୋଇ ପଡ଼ିବ କିପରି ? ଏବଂ ମାଂସ ପୁଣି ଫୁଲ ହୁଅନ୍ତା କିପରି ? ଏଠାରେ ଏତିକି ସ୍ମରଣ କରାଯାଇ-

ତାରେ କବି ମହାନ୍ତି 'ଚମ୍ପାଫୁଲ' କବିତାରେ କେବଳ 'ଦେହ' କିମ୍ବା ଅଦେହର ସ୍ପର୍ଶ ଦେଇ ନାହାନ୍ତି କି ଧାର୍ମିକ ବ୍ୟକ୍ତିର ଉକ୍ତିଟିର କଥା କହିବାରେ ପଞ୍ଚମୁଖ ହୋଇ ନାହାନ୍ତି । ସେ 'ଚମ୍ପାଫୁଲ'ରେ ଯେଉଁ ଅଜ୍ଞେୟ ବସ୍ତୁ/ପୁରୁଷଙ୍କ ସ୍ପର୍ଶ ଅନୁଭବ କରିଛନ୍ତି ସେହି ସ୍ପର୍ଶକୁ ହୁଏତ ସଚେଷ୍ଟ ସ୍ପଷ୍ଟ ଭାବରେ ପ୍ରକାଶ କରିପାରିବା ସମ୍ଭବ ନୁହେଁ । ତାଙ୍କ କବିତାର ପରିକଳ୍ପନା ଦେହ ଓ ଅଦେହର ସୀମାକୁ ଅତିକ୍ରମ କରି ଯାଉଛି । ସେଇଥିପାଇଁ କବି ଗୁରୁପ୍ରସାଦ 'ଚମ୍ପାଫୁଲ' କବିତାଟିକୁ 'ସମୁଦ୍ରସ୍ନାନ' କବିତା ସଂକଳନର ପ୍ରାରମ୍ଭରେ ସ୍ଥାନିତ କରିବା ପାଇଁ ଉପଯୁକ୍ତ ମନେ କରିଛନ୍ତି । 'ସମୁଦ୍ରସ୍ନାନ' ପୁସ୍ତକରେ ଯେଉଁ କାବ୍ୟବୃତ୍ତ ସେ ସ୍ଥିର କରିଛନ୍ତି 'ଚମ୍ପାଫୁଲ' କବିତାରେ ହିଁ ତହିଁର ପ୍ରଥମ ପଦଧ୍ୱନି ଶୁଣିବାକୁ ମିଳୁଛି । ତାଙ୍କର ପରବର୍ତ୍ତୀ କବିତା 'ସିନ୍ଧୁଯାତ୍ରା'ରେ ମଧ୍ୟ ଏଇ ସତ୍ତା ଉପଲବ୍ଧି କରିହୁଏ ।

'ଚମ୍ପାଫୁଲ' କବିତାର ଅନ୍ୟ ଏକ ବିଶେଷତ୍ୱ ହେଉଛି, ଯେଉଁଠାରେ କବିତା ଶେଷ ହୋଇଛି ବୋଲି ପାଠକେ ମନେକରନ୍ତି, ଠିକ୍ ସେଇଠାରୁ ହିଁ କବିତାଟି ଆରମ୍ଭ ହୋଇଛି କହିଲେ ଭୁଲ ହେବ ନାହିଁ । ଏହାକୁ ଏକ ପ୍ରଶ୍ନକଧର୍ମୀ କବିତା ରୂପେ ବିବେଚିତ କରିବା ଆବଶ୍ୟକ, ଯଦିଓ କେତେକ ଏହାକୁ ରୂପକଳ୍ପଧର୍ମୀ କବିତାଭାବେ ମଧ୍ୟ ଗ୍ରହଣ କରିଥାନ୍ତି । ●

ବିଜୟ କୁମାର ଚୌଧୁରୀ

# ଗୁରୁପ୍ରସାଦଙ୍କ ସହ ସାକ୍ଷାତକାର

[ ବହୁତ "Do you think it's worth it" ଢଙ୍ଗ, ମୋତେ ଗୋଟାଏ ଇଣ୍ଟରଭ୍ୟୁ କ'ଣ କରିବେ ? ସେଥିରେ କ'ଣ ଥା' ଏତେ ଦରକାର ?" ଇତ୍ୟାଦି କହି ଆମକୁ ଦୂରେଇ ଦେବାର ଅନେକ ଚେଷ୍ଟା ପରେ ଗୁରୁପ୍ରସାଦ ପରିଶେଷରେ ରାଜି ହୋଇଥିଲେ, 'ମୂଲ୍ୟାୟନ' ତରଫରୁ ଏଇ ସାକ୍ଷାତକାର ପାଇଁ କିଛି ସମୟ ଦେବାକୁ । ଏବଂ ଆମେ ତାଙ୍କୁ ସାକ୍ଷାତ କରିଥିଲୁଁ ବି. ଜେ. ବି. କଲେଜ, ଭୁବନେଶ୍ୱରରେ ତାଙ୍କର ଅଧ୍ୟକ୍ଷ-ପ୍ରକୋଷ୍ଠରେ ତା ୧୯ । ୯ । ୧୯୭୯ର 'ହିରଣ୍ମୟ ସନ୍ଧ୍ୟା' ଉତ୍ତୀର୍ଣ୍ଣ ହୋଇଗଲା ପରେ ପରେ । ପରିସ୍ଥିତି ଓ ସମୟ— (ସେହି ସନ୍ଧ୍ୟାରେ ସାନ୍ଧ୍ୟ କଲେଜରେ ନିର୍ବାଚନ ଅନୁଷ୍ଠିତ ହେଉଥାଏ )—ଏଭଳି ଏକ କାର୍ଯ୍ୟକ୍ରମ ପାଇଁ ଆଦୌ ଅନୁକୂଳ ନ ଥିଲେ ସୁଦ୍ଧା ପ୍ରାୟ ଦୁଇ-ଘଣ୍ଟାରୁ ଊର୍ଦ୍ଧ୍ୱ ସମୟ ଧରି ସାକ୍ଷାତକାର ଚାଲିଥିଲା । ଉପର ମହଲାରେ ଶ୍ରେଷ୍ଠ ଗଣିତ କରାଯାଉଥିବା ପ୍ରକୋଷ୍ଠର ଗୋଟିଏ ଦୁଇଟି ଝରକାର କାଚ କେତେକ ଅତି-ଉତ୍ସାହୀ ଛାତ୍ରଙ୍କ ଦ୍ୱାରା ଭଙ୍ଗାଯିବା ଇତ୍ୟାଦି ଖବର ଉଦ୍ବିଗ୍ନ ଅଧ୍ୟାପକମାନେ ତାଙ୍କ ନିକଟରେ ପହଞ୍ଚାଉଥାନ୍ତି । ସବୁ ଖବର ଗୁରୁପ୍ରସାଦ ଗ୍ରହଣ କରୁଥାନ୍ତି ସ୍ଥିର, ଅବିଚଳିତ ଭାବରେ ଯେମିତିକି ଏସବୁ ଯାହା ଘଟିଯାଉଛି ଏଥିରେ ବ୍ୟସ୍ତ ବା ଉଦ୍ବିଗ୍ନ ହେବାର କିଛି ନାହିଁ, ଏ ସବୁ ଅତି ସାଧାରଣ, ଗତାନୁଗତିକ ଘଟଣା । ବଡ଼ ନିର୍ବିକାର ଭାବ ତାଙ୍କର, ସ୍ମିତ ହାସ୍ୟ, ସ୍ଥିର କଥା, ଟେବୁଲ୍‌ର ଗୋଟିଏ କୋଣରେ ଗୋଡ଼ ରଖି ବେଶ୍ ଅବିଚଳିତ ଭାବରେ ବସିଥାନ୍ତି ସେ । ଘନ କଫି ରଙ୍ଗର ସାର୍ଟର ଉପର ବୋତାମ

ଖୋଲା, ଚଉଡ଼ା କପାଳ ଉପରେ ବେଶ୍ ଉଜ୍ଜ୍ୱଳ ଆଖି, ମୁଣ୍ଡରେ ପତଳା କେଶଗୁଚ୍ଛ ମଣ୍ଡିତ। ପ୍ରୂବଦିନ ତାଙ୍କୁ ଆମର ପ୍ରଶ୍ନଗୁଡ଼ିକ ଦିଆଯିବାବେଳେ ସେ ତାକୁ ତରତର ପଢ଼ିନେଇ ଟିକିଏ ଗମ୍ଭୀର ହୋଇଯାଇ ମୋତେ କହିଥିଲେ, ଯେଉଁ ପ୍ରଶ୍ନଗୁଡ଼ିକ ତାଙ୍କର ବ୍ୟକ୍ତିଗତ ଜୀବନର ସୀମାବଦ୍ଧତା ଭିତରକୁ ପଶିବାକୁ ଉଦ୍ୟତ, ସେଥିରୁ କେତେକର ଉତ୍ତର ସେ ନ ଦେଇ ପାରନ୍ତି। କିନ୍ତୁ ଆମେ ଲକ୍ଷ୍ୟକଲୁଁ, ସାକ୍ଷାତକାର ବେଳକୁ ଏ ପ୍ରକାର ସଙ୍କୋଚ ବା ଦ୍ୱିଧା ତାଙ୍କର ଆଦୌ ନଥିଲା; ଅତି ଖୋଲାଖୋଲି ଭାବରେ ଏକ ଖୋଲାଖାଡ଼ର୍ ମନ ନେଇ ସେ ଆମର ସମସ୍ତ ପ୍ରଶ୍ନର ଉତ୍ତର ଦେଇ ଚାଲିଲେ। ସାଧକଲେଜ ଅଫିସର ଜଣେ କର୍ମଚାରୀ କିଛି ଫାଇଲ୍ ଧରି ଆସିବାରୁ ତାଙ୍କୁ ଗୁରୁପ୍ରସାଦ କହିଲେ"—ବାବୁ, ଏବେ ଥାଉ, ଦେଖୁନାହାଁ — I am facing an interview ?" ସାକ୍ଷାତକାର ସମୟରେ ତାଙ୍କର ଉପସ୍ଥିତବୁଦ୍ଧି, ସବୁ ଅନୁଭୂତିକୁ ଅବଚେତନ ସ୍ତରରେ ଗଚ୍ଛିତ କରିନେବାର କ୍ଷମତା, ନିଜ କବିତା ସମ୍ପର୍କରେ ଏକ ଖେଳୁଆଡ଼ ସୁଲଭ (ସ୍ପୋର୍ଟିଭ୍) ନିର୍ଲିପ୍ତତା ଆମକୁ ମୁଗ୍ଧକରିଥିଲା। ଏସବୁସତ୍ତ୍ୱେ ତାଙ୍କର ଗଭୀର ବେଦନା ଓ ଏକାକୀତ୍ୱ ଆମଠାରୁ ଲୁଚିପାରି ନଥିଲା, କାରଣ ଦୁଇ ଥର ସେ କହି ଉଠିଥିଲେ—"When I am alone, really alone with no one around me, I have a strange feeling. I don't know if one day I may pull a gun and shoot myself or hang myself from the fan-hook."

ଏଠାରେ ଏହା ବୋଧହୁଏ ପ୍ରାସଙ୍ଗିକ ଓ ଉଲ୍ଲେଖଯୋଗ୍ୟ ଯେ, 'ମୂଲ୍ୟାୟନ' ତରଫରୁ ଏ ସାକ୍ଷାତକାର ତାଙ୍କ କବି-ଜୀବନର ପ୍ରଥମ ଆନୁଷ୍ଠାନିକ ସାକ୍ଷାତକାର। ଗୁରୁପ୍ରସାଦ ଏପର୍ଯ୍ୟନ୍ତ କୋଣସି ପତ୍ର ପତ୍ରିକା, ବେତାର ବା ସେପରି କୌଣସି ସଂସ୍ଥା

ତରଫରୁ ଅନୁଷ୍ଠିତ 'ସାକ୍ଷାତକାର'ରେ ଅଂଶ ଗ୍ରହଣ କରି ନଥିଲେ, ଯଦିଓ ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା କବିତା ପାଇଁ ପୁରସ୍କୃତ ଓ ସ୍ୱାଧୀନତୋତ୍ତର ଓଡ଼ିଆ ସାହିତ୍ୟର ଅନ୍ୟତମ ପ୍ରତିଭାବାନ୍, ଶକ୍ତିମାନ୍ ଓ ପ୍ରଭାବଶାଳୀ କବିରୂପେ ସ୍ୱୀକୃତ।]

'ମୂଲ୍ୟାୟନ': ଆପଣଙ୍କ କବିତା ଇଲିୟଟ୍‌ଙ୍କ କବିତା ଦ୍ୱାରା ଅତି ମାତ୍ରାରେ ପ୍ରଭାବିତ ବୋଲି ସମାଲୋଚକମାନଙ୍କର ମତ। ଏହି ପ୍ରଭାବ ଭାବ, ଭାଷା, ପ୍ରକାଶଭଙ୍ଗୀ, ଏପରିକି ରୂପକଳ୍ପ ସ୍ତରରେ ମଧ୍ୟ ସୁସ୍ପଷ୍ଟ। ଇଲିୟଟ୍‌ଙ୍କ 'ପ୍ରୁଫ୍ରକ୍', 'ଦ ୱେଷ୍ଟଲାଣ୍ଡ' ଇତ୍ୟାଦି ଓଡ଼ିଆରେ (ଯଥାକ୍ରମେ) 'ଗୋବର ଗଣେଶ,' 'କାଳପୁରୁଷ' ପ୍ରାଇଭେଟାଇଜ ହୋଇଗଲାଭଳି ମନେହୁଏ। ଏ ସମ୍ବନ୍ଧରେ ଆପଣଙ୍କର ନିଜ ମତ କ'ଣ ?

ଗୁରୁପ୍ରସାଦ: ହଁ, ମୁଁ ଲେଖା ଆରମ୍ଭ କଲାବେଳେ ଇଲିୟଟ୍ ସମସ୍ତଙ୍କ ମୁହଁରେ। ତେଣୁ ମୁଁ ବି ତାଙ୍କଦ୍ୱାରା ନିଶ୍ଚୟ ଗଭୀରଭାବେ ପ୍ରଭାବିତ। ଏବଂ 'ଗୋବର ଗଣେଶ' ଉପରେ 'ପ୍ରୁଫ୍ରକ୍'ର ଛାୟା ନିଶ୍ଚିତଭାବେ ପଡ଼ିଛି। କିନ୍ତୁ ସେତିକି। ଅନ୍ୟ କୌଣସି କବିତା ଉପରେ ବୋଧହୁଏ ଇଲିୟଟ୍‌ଙ୍କ ପ୍ରଭାବ ତ ନାହିଁ। ଆଉ, 'କାଳପୁରୁଷ'। 'କାଳପୁରୁଷ' ଲେଖା ହେବାର ଏକ ମଜା (ମାନେ 'ଇଣ୍ଟରେଷ୍ଟିଂ') ଇତିହାସ ଅଛି। ମୁଁ ସେତେବେଳେ ପୁରୀରେ ଥାଏ। ପୁରୀ ସମୁଦ୍ରକୂଳରେ ଦିନେ ସନ୍ଧ୍ୟାରେ ରାଧାମୋହନ ଗଡ଼ନାୟକ ଓ ମୁଁ ବୁଲୁଥିଲାବେଳେ କ'ଣ ଏମିତି 'ଦ ୱେଷ୍ଟଲାଣ୍ଡ' କଥା ପଡ଼ିଲା। ଗଡ଼ନାୟକ କହିଲେ, "କାହିଁ, ଓଡ଼ିଆରେ ସେଭଳି ଗୋଟେ କବିତା ଲେଖାଯାଇ ପାରୁଛି ?" ମୁଁ ମଜାରେ କହିଲି, "ହେବନାହିଁ କାହିଁକି ? ଚେଷ୍ଟାକରିଗଲେ,

ନିଷ୍ଟୟ ହେବ ।" ସେଦିନ ସମୁଦ୍ର କୂଳରୁ ଫେରି ଘରେ 'ଦି ଓ୍ୱେଷ୍ଟଲାଣ୍ଡ' ଖୋଲି 'କାଳପୁରୁଷ'ର ପ୍ରଥମ ଭାଗ ଲେଖିଲି ଓ ପରଦିନ ଗଡ଼ନାୟକଙ୍କୁ ଦେଖାଇଲି । ସେ ଭାରି ପସନ୍ଦ କଲେ । ତା'ପରେ ଅଳ୍ପ ଅଳ୍ପ ଲେଖି ବୋଧହୁଏ ବର୍ଷେ ଦି ବର୍ଷରେ 'କାଳପୁରୁଷ' ସାରିଲି ।

'ମୂଲ୍ୟାୟନ' :—ଗଡ଼ନାୟକ ଆପଣଙ୍କୁ ଏକ ପ୍ରକାର 'ଚ୍ୟାଲେଞ୍ଜ' କରିବାରୁ ଆପଣ 'କାଳପୁରୁଷ' ଲେଖିଲେ, ନା ସେଭଳି ଏକ କବିତା ଲେଖିବା ପାଇଁ ଆପଣଙ୍କର 'ଯୋଜନା' ଥିଲା ?

ଗୁରୁପ୍ରସାଦ :—'ଦି ଓ୍ୱେଷ୍ଟଲାଣ୍ଡ'ଭଳି କବିତାଟିଏ ଓଡ଼ିଆ ଭାଷାରେ ଓଡ଼ିଆ ଜୀବନ ଓ ସଂସ୍କୃତି ପରିପ୍ରେକ୍ଷୀରେ ଲେଖିବା ପାଇଁ ମୁଁ ଅନେକ ଦିନ ଧରି ଚିନ୍ତାକରୁଥିଲି । ଗଡ଼ନାୟକ ଓ ମୋ' ଭିତରେ ସେଦିନର ସେ କଥାବାର୍ତ୍ତା ମୋ'ର ଏ ଚିନ୍ତାକୁ କାର୍ଯ୍ୟରେ ପରିଣତ କରିବାରେ ସାହାଯ୍ୟ କଲା ।

'ମୂଲ୍ୟାୟନ' :—ଓଡ଼ିଆ ଜୀବନ ଓ ସଂସ୍କୃତିର ପରିପ୍ରେକ୍ଷୀରେ 'ଦି ଓ୍ୱେଷ୍ଟଲାଣ୍ଡ' ଭଳି କବିତାଟିଏ ଓଡ଼ିଆରେ ଲେଖିବା ପାଇଁ ବହୁଦିନଧରି ଚିନ୍ତାକରୁଥିଲେ ବୋଲି ଆପଣ କହୁଛନ୍ତି । କିନ୍ତୁ, ପାଶ୍ଚାତ୍ୟ ସମାଜର ଯେଉଁ ପ୍ରକାର ଗଭୀର ନୈରାଶ୍ୟ, ବିଡ଼ମ୍ବନା, ମୂଲ୍ୟବୋଧଗତ ଅନିଶ୍ଚିତତା ଇତ୍ୟାଦି ଅନୁଭୂତି 'ଦି ଓ୍ୱେଷ୍ଟଲାଣ୍ଡ'ର ପୃଷ୍ଠଭୂମିରେ ରହିଛି, ଆପଣ କଣ କହିବାକୁ ଚାହୁଁଛନ୍ତି ଯେ 'କାଳପୁରୁଷ' ଲେଖାହେବା ସମୟରେ ସାଧାରଣ ଓଡ଼ିଆ ଜୀବନ ଓ ସଂସ୍କୃତିରେ ତଦନୁରୂପ ଅନୁଭୂତିମାନ ଥିଲା ?

ଗୁରୁପ୍ରସାଦ :—ମୁଁ ଭାବୁଛି, ହୁଏତ ଥିଲା—ଯଦିଓ ପାର୍ଥକ୍ୟ ତ କିଛି ନିଶ୍ଚୟ ରହିବ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଓଡ଼ିଆ

ସାମାଜିକ ଜୀବନ ଓ 'ମିଲ୍ୟୁ'(Milieu)କୁ ତ ମୁଁ 'କାଳପୁରୁଷ'-ରେ ରୂପଦେବାକୁ ଚେଷ୍ଟା କରିଛି । 'ଦ ଓ୍ୱେଷ୍ଟଲ୍ୟାଣ୍ଡ'ର ଲଣ୍ଡନବାସୀଙ୍କ ଉପରେ ସେ 'କ୍ରାଉଡ୍'(Crowd) ଓ 'କାଳପୁରୁଷ' ର ଗ୍ରାଣ୍ଡରୋଡ ପୋଲରେ 'ନୀରବ ଜନତା'ର ଯାତାୟତ ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ଅଛି ବୋଲି ମୋର ମନେ ହେଉନାହିଁ । ଅନ୍ତତଃ ମୁଁ ଯେତେ ଥର ଲକ୍ଷ୍ୟ କରିଛି ସେମାନଙ୍କ ମୁହଁରେ ସେ 'କ୍ରାଉଡ' କଥା ମନେ ପକାଇଦେଇଛି । ଏବଂ 'ଦ ଓ୍ୱେଷ୍ଟଲ୍ୟାଣ୍ଡ' ର ସେ 'ଟାଇପିଷ୍ଟଗାର୍ଲ' ଘଟଣା ଭଳି ଆମ ଓଡ଼ିଆ ସମାଜରେ 'କାଳପୁରୁଷ'ର ବୋଷବାବୁ, ସହରର ବ୍ୟବସାୟୀ ଓ ତାଙ୍କ ସ୍ତ୍ରୀ (ସେ କହୁଛି 'ବାପା ଥିଲେ କଟକରେ ବୋଉ ଗଲା ଧାର ମାଗି') ମଧ୍ୟରେ ଥିବା ସଂପର୍କ ମଧ୍ୟ ଖୁବ୍ ସମ୍ଭବ । ମୁଁ ତ ଭାବୁଛି ଏହା ବୋଧହୁଏ ଆମ ସମାଜର ଗୋଟିଏ ସାଧାରଣ ଘଟଣା ।

'ମୂଲ୍ୟାୟନ' : —ଆପଣ ଅନେକ ଦିନ ଧରି କବିତା ଲେଖୁଥିଲେ ବି, ୧୯୭୫ରେ 'ନୂତନ କବିତା'ର ପ୍ରକାଶ ଓ ତା'ର 'ଭୂମିକା'ରେ ଇଲିୟଟ ଓ ଅନ୍ୟାନ୍ୟ ଇଂରାଜୀ ସମାଲୋଚକଙ୍କ କାବ୍ୟ-ତତ୍ତ୍ୱ ପରିପ୍ରେକ୍ଷୀରେ ଉକ୍ତ କବିତା-ସଂକଳନର ମୂଲ୍ୟାୟନ ଚିତ୍ତରଞ୍ଜନ ମୋହନ ମହାନ୍ତି କରିସାରିବା ପରେ ଆପଣଙ୍କ କବିତା ବେଶୀ ଆଲୋଚିତ ହେଲା । କେହି କେହି ମନେ କରନ୍ତି ଯେ 'ନୂତନ କବିତା'ର ସେ 'ଭୂମିକା' ଦ୍ୱାରା ହିଁ ଆପଣ କବିଭାବରେ ପ୍ରତିଷ୍ଠା ଲାଭକଲେ । ଏ ସଂପର୍କରେ ଆପଣଙ୍କ ମତାମତ ? ଆଉ, ଆପଣଙ୍କ କବିତା ଓ ଭାନୁଜୀ ରାଓଙ୍କ କବିତା ମଧ୍ୟରେ ଏତେ ପାର୍ଥକ୍ୟ ସତ୍ତ୍ୱେ ଦୁହିଁଙ୍କି ଏକାଠି କରି ପ୍ରକାଶ କରିବାର ଲକ୍ଷ୍ୟ କ'ଣ ?

ଗୁରୁପ୍ରସାଦ : ସଚ୍ଚିନ୍ ବାବୁ କଲେଜରେ ମୋ'ଠାରୁ ବୋଧ-ହୁଏ ପାଞ୍ଚ ବର୍ଷ ଜୁନିଅର । ମୋର ପ୍ରକାଶିତ ହେଉଥିବା କବିତା ସେ ପଢ଼ିଥିଲେ । ତା'ପରେ ପୁଣାରେ ତାଙ୍କ ସହିତ ମୋର ଦେଖା ହେଲା ଓ ମୋର କବିତା ପ୍ରତି ତାଙ୍କର ଗଭୀର ଅନୁରାଗ ସ୍ପଷ୍ଟ ସେ କହିଲେ । ସେହି ଦିନଠାରୁ ଆମର ସମ୍ପର୍କ ଅତି ଗଭୀର ବନ୍ଧୁତାରେ ପରିଣତ ହୋଇଛି । He has great love for me• ଶୁଣିଛି,'ନୂତନ କବିତା'ର ସେ 'ଭୂମିକା' ଛଡ଼ା ମୋର ଅନ୍ୟ କବିତା-ଗୁଡ଼ିକ ସମ୍ପର୍କରେ ମଧ୍ୟ ସେ ଲେଖିଛନ୍ତି । 'କାଳପୁରୁଷ' ଉପରେ ବି ତାଙ୍କର କୁଆଡ଼େ ଖୁବ୍ ବଡ଼ ପ୍ରବନ୍ଧଟିଏ ଗୋଟିଏ ପୂଜା ପତ୍ରିକାରେ ବାହାରି ଥିଲା ଏଇ ଦୁଇ ତିନି ବର୍ଷ ତଳେ··· । ମାନସିଂହ ବାବୁଙ୍କ କବିତା ଓ ମୋ' କବିତା ଅନେକ ଫରକ୍, ତଥାପି, ସେଗୁଡ଼ିକ ବି 'ନୂତନ', ମାନେ new and refreshing.... ......... ସେଥିଯୋଗୁଁ ବୋଧେ ସଚ୍ଚିନ୍ ବାବୁ ଆମ ଦୁହିଁଙ୍କ କବିତାକୁ ଏକାଠି କରିଥିଲେ ।

'ନୂଆସୁର' : ଆପଣଙ୍କ କବିତାକୁ ଡ଼ଃ ମାନସିଂହ ଅତି କଠୋର ଓ ଅନୁଦାର ଭାବରେ ସମାଲୋଚନା କରିଥିଲେ । ଆପଣଙ୍କ କବିତାକୁ ଯେତେ ନୁହେଁ, ସଚ୍ଚିଦ ମୋହନ ମହାନ୍ତିଙ୍କ 'ଭୂମିକା'କୁ ତା'ଠାରୁ ଅନେକ ବେଶୀ । କ'ଣ ତା'ର କାରଣ ହୋଇପାରେ ? ଅସହିଷ୍ଣୁତା ? ଉପଯୁକ୍ତ ରୁଚିର ଅଭାବ ? ନା, ଆଉ କିଛି ?

ଗୁରୁପ୍ରସାଦ : ଠିକ୍ କ'ଣ କହିପାରିବି ନାହିଁ । ଡ଼ଃ ମାନସିଂହଙ୍କ ପ୍ରତି ମୋର ସବୁବେଳେ ଗଭୀର ସମ୍ମାନ । ମୁଁ ଭାବୁଛି ତାଙ୍କର ମଧ୍ୟ ମୋ' ପ୍ରତି .କିଛି ଶ୍ରଦ୍ଧା ନିଶ୍ଚୟ ଥିଲା, କାରଣ ଆମେ ଯେତେ ଥର ପରସ୍ପରକୁ ଭେଟିଛୁ, ଖୁବ୍ ଭଲ ଭାବରେ କଥାବାର୍ତ୍ତା

ହୋଇଛନ୍ତି । ମୋର ଯେତେଦୂର ମନେପଡ଼ୁଛି, ଥରେ ବୋଧହୁଏ ମୋର ଗୋଟିଏ କବିତାକୁ ମୋ' ମୁହଁରେ ପ୍ରଶଂସା ବି କରିଥିଲେ । ଗୋଟେ ଅତି ଇଣ୍ଟରେଷ୍ଟିଂ ଘଟଣା କହିବି । ମୁଁ ପ୍ରତିରକ୍ଷା ବିଭାଗରେ ଥିଲାବେଳେ ମୋର ଜଣେ ଊର୍ଦ୍ଧ୍ୱତନ ହାକିମ Col. Jog ହଠାତ୍ ପଚାରିଲେ, "G. P., I'm told you write excellent poetry, I didn't know that." ମୁଁ କହିଲି, "But, Sir, who told you that I commit that kind of sin?" ସେଇଠୁଁ ସେ ନିକଟରେ ଡ଼ଃ ମାନସିଂହଙ୍କ ସହିତ ଏକା କମ୍ପାର୍ଟମେଣ୍ଟରେ ଯାତ୍ରା କରିଥିବା କଥା କହି କହିଲେ : 'Dr. Mansingh spoke very highly of your poetry' ଆମ ଦୁହିଁଙ୍କ ମଧ୍ୟରେ ବ୍ୟକ୍ତିଗତ ସ୍ତରରେ କିଛି ଅଶ୍ରଦ୍ଧା ବା ଅସୂୟା ଆଦୌ ନ ଥିଲା ।

'ମୂଲ୍ୟାୟନ' : ଆମେ ଭାବୁଛୁଁ, ଆପଣ ଓ ତାଙ୍କ ଭିତରେ 'ସେନ୍‌ସିବିଲିଟି'ର ମୌଳିକ ପାର୍ଥକ୍ୟ ଯୋଗୁଁ ଏପରି ଘଟିଲା ।

ଗୁରୁପ୍ରସାଦ : ହଁ, ତା' ହୋଇପାରେ ।

'ମୂଲ୍ୟାୟନ' : ଇଲିୟଟଙ୍କ ଛଡ଼ା ଅନ୍ୟକେଉଁ କବି ଆପଣଙ୍କ ମନରେ ରେଖାପାତ କରିଛନ୍ତି, ବା ଅନ୍ୟ କୌଣସି କବିଙ୍କ ଲେଖା-ଦ୍ୱାରା ଆପଣ ପ୍ରଭାବିତ ହୋଇଛନ୍ତି ?

ଗୁରୁପ୍ରସାଦ : ଭଂଜଙ୍କ କାବ୍ୟରୁ କିଛି ପଢ଼ିଛି । ତା' ପରେ, ରାଧାନାଥ, ସଚ୍ଚିରାଉତରାୟ, ବିଶେଷ କରି ଜଗନ୍ନାଥ ଦାସଙ୍କ 'ଭାଗବତ'କୁ ବି ଅନେକ ଥର ପଢ଼ିଛି , 'ଭାଗବତ'ର ସେଇ ଯେଉଁ Cosmic Themes, and that timeless quality about its poetry ମୋତେ ଗଭୀର ଭାବେ ପ୍ରଭାବିତ କରିଛି ।

ସଚ୍ଚି ରାଉତରାୟଙ୍କ କବିତାକୁ ମନଦେଇ ପଢ଼ିଛୁ ।...ଅନେକ ସେଥିରୁ ଭଲ ଲାଗିଛି । ମୁଁ ରିଆକ୍ଟ (React) କରିଛି । ସେତେବେଳେ ସଚ୍ଚି ବାବୁଙ୍କ 'ଅଳକାସାନ୍ୟାଲ' କବିତାଟି ଖୁବ୍ ନାଁ କରିଥାଏ । ଆଜିର ଯେଉଁ ବର୍ଦ୍ଧମାନ କୋର୍ଟ ସେତେବେଳେ ସେଠି 'ନ୍ୟୁଗଭ ମେନ୍' ବୋଲି ଗୋଟିଏ ମେସ୍ ଥାଏ । ଜଣେ ଭଦ୍ରମହିଳା ନେଇଯାଉଥିଲେ ବେଳେ ଆମଭିତରୁ ଜଣେ କିଏ ତାଙ୍କ ଉପରେ ହଠାତ୍ ମନ୍ତବ୍ୟ କରିଦେଲେ 'ଏଇ ଯାଉଛି ଅଳକା ସାନ୍ୟାଲ୍' । ସେଇ 'କମେଣ୍ଟ' ଟି କାହିଁକି କେଜାଣି ମୋ' ମନରେ ରହିଯାଇଥିଲା । ଏ ଘଟଣାର କିଛି ବର୍ଷ ପରେ ମୁଁ ମୋର 'ଅଳକା ସାନ୍ୟାଲ୍' କବିତାଟି ଲେଖିଲି ।

'ମୂଲ୍ୟାୟନ': 'ସମୁଦ୍ର ସ୍ନାନ' ସଙ୍କଳନରେ ଥିବା କବିତା ଗୁଡ଼ିକ ଛଡ଼ା ଆପଣ ଆଉ କିଛି କେବେ ଲେଖିଥିଲେ କି ?

ଗୁରୁପ୍ରସାଦ : ହଁ, ବଦ୍‌ଲେୟାରଙ୍କ ପ୍ରାୟ ପଚିଶ ହେବ କବିତା ମୁଁ ଓଡ଼ିଆରେ ଅନୁବାଦ କରିଥିଲି । ଗୋଟିଏ କଳା ଖାତାରେ ସେସବୁ ଓ ମୋ' ନିଜର ଆଉ କେତେକ ଅସମ୍ପୂର୍ଣ୍ଣ କବିତା ଥିଲା । ବଦ୍‌ଲେୟାରଙ୍କ କବିତା ଖୁବ୍ ଭଲ ଲାଗିଥିଲା, ତେଣୁ ଅନୁବାଦ କରିଥିଲି, କିନ୍ତୁ ବଦ୍‌ଲେୟାରଙ୍କ ଦ୍ୱାରା ମୁଁ ପ୍ରଭାବିତ ହୋଇଛି ବୋଲି ଭାବୁନାହିଁ । କିନ୍ତୁ ମୁଁ ସେତେବେଳେ ପ୍ରତିରକ୍ଷା ବିଭାଗରେ ଯୋଗ ଦେଲି, ସେ ବୃକ୍‌ସବୁ ବହୁତ ବଦଳି ଗ...ସେଇ ବଦଳି ବେଳେ ମୋର ସେ କଳାଖାତାଟି କେଉଁଠି ହଜିଗଲା........ I have always deeply felt that loss...। ସେକ୍ସପିୟରଙ୍କ ସନେଟରୁ କେତୋଟି ଅନୁବାଦ କରିବାକୁ ଚେଷ୍ଟା କରିଥିଲି କିନ୍ତୁ ତାଙ୍କର କେତୋଟି 'ଫ୍ରେଜ୍' (Phrase) ପାଖରେ

ବାରମ୍ବାର ଅଟକିଲି – ସେ ଗୁଡ଼ିକୁ ମୋଟେ ଅନୁବାଦ କରି ହେଲା-ନାହିଁ । ଏଇ ଧରନ୍ତୁ 'Love's increase'...କ'ଣ ହବ ତାହା, ଉତ୍ତଆ ଅନୁବାଦ ? ତେଣୁ ସେ ଚେଷ୍ଟା ଛାଡ଼ିଲି । ଅନେକ ଦିନ ପରେ ଏବେ 'ପ୍ରଜ୍ଞା', ଓ 'ସ୍ୱତନ୍ତ୍ରତା'ର କୋଟି କ'ଣ ଶତାବ୍ଦୀମାନଙ୍କରେ ଆଉ ଗୋଟେ ଯୋଡ଼ି କବିତା କ'ଣ ବାନ୍ଧୁଛନ୍ତି । ଦେଖିଥିବେ... ବାସ୍ ସେତିକି ତ ପ୍ରକାଶିତ । ।

'ମୂଲ୍ୟାୟନ': ଆପଣ ଅଳକାଳ ଆଉ କବିତା ଲେଖୁ ନାହାନ୍ତି କାହିଁକି ?

ଗୁରୁପ୍ରସାଦ: ଅନେକ ଦିନ ତଳେ ସର୍ବେଶ୍ୱର ବାବୁଙ୍କ * ଏଭଳି ଏକ ପ୍ରଶ୍ନର ଉତ୍ତରରେ ଯାହା କହିଥିଲି ଠିକ୍ ସେୟା ଆପଣମାନଙ୍କୁ କହିବାକୁ ନାହିଁ, ଭାବୁଛି । କ'ଣ ଦିନେ ଏମିତି ସର୍ବେଶ୍ୱର ବାବୁ ମୋତେ ମଜ୍ଜୁରି ଦେଲେ—'କଣ' କହ ! ଯୁଗ ଭିତରେ ଆଉ କ'ଣ ସବୁ କବିତା ଲେଖା ହୋଇଛୁ ?' ମୁଁ ଉତ୍ତର ଦେଲି : 'କବିତା ! Why that adolescent Pursuit ?' ଟିକିଏ ରହିଯାଇ ସେ ପୁଣି ପଚାରିଲେ, 'ତା' ହେଲେ କହ, କ'ଣ ସବୁ ତମ ମତରେ adult pursuit ? ମୁଁ କହିଲି : 'Why women, money, etc, etc. I think this was too much for him..... ତେବେ, ମୁଁ ଲେଖା ବନ୍ଦ କରି ନାହିଁ । ପ୍ରଶାସନିକ ବିଭାଗରେ ଯୋଗ ଦେଲା ପରେ ଆଉ ଅବସର ମିଳିଲା ନାହିଁ । ଲେଖିବା ପ୍ରାୟ ବନ୍ଦ ହୋଇଗଲା ।

---

* ସଂପ୍ରତି ଶ୍ରୀଯୁକ୍ତ ସର୍ବେଶ୍ୱର ଦାସ ଖଲିକୋଟ କଲେଜ, ବ୍ରହ୍ମପୁରରେ ଇଂରାଜୀ ବିଭାଗର ମୁଖ୍ୟ ଅଧ୍ୟାପକ – ସଂପାଦକ ।

ଏବେ ଏମିତି କୁଆଡ଼େ ବାହାରକୁ ଗଲାବେଳେ ମୋଟର କାର୍-ଭିତରେ କବିତା ଧାଡ଼ିଏ ଦି' ଧାଡ଼ି ମନକୁ ଆସେ। ଡାଇରିରେ ତାକୁ ଲେଖି ରଖେ। ମୋତେ ଗୋଟିଏ କବିତା ଲେଖିବାକୁ ଅନେକ ଥର ବର୍ଷେ ବା ଅଧିକ ସମୟ ଲାଗିଛି। ଏଇନେ ଅବଶ୍ୟ ଗ୍ରନ୍ଥ-ବାକୁ ଦେବାପାଇଁ କିଛି finished poems ନାହିଁ। ଆଶାକରୁଛି, Retire କଲା ପରେ କିଛି ଲେଖିପାରିବ। ଯାହାସବୁ ଏଣେ-ତେଣେ ପଡ଼ିଛି ତାକୁ final shape ଦେବି। ଏଇନେ ସମୟ ମିଳୁନାହିଁ।

'ମୂଲ୍ୟାୟନ' : 'ଦ ଓ୍ୱେଷ୍ଟ୍‌ଲ୍ୟାଣ୍ଡ' ପରେ ଇଲିୟଟଙ୍କ କାବ୍ୟ- ବିବର୍ତ୍ତନର ପରିଣତି 'ଏରିଏଲ୍ ପୋଏମସ୍' ଓ 'ଫୋର କ୍ୱାର୍ଟେଟ୍‌ସ୍'। ଆପଣଙ୍କ 'କାଳପୁରୁଷ' ପରବର୍ତ୍ତୀ କବିତା (ଯଥା 'ଅନୂର ଜବାବ', 'ସିଢ଼ୁଆ') ଗୁଡ଼ିକୁ ଅତି ବେଶୀ ହେଲେ 'ଏରିଏଲ୍ ପୋଏମ୍‌ସ୍' କୁହାଯାଇ ପାରେ। କିନ୍ତୁ ଆପଣଙ୍କର 'ଫୋର୍-କ୍ୱାର୍ଟେଟ୍‌ସ୍' କାହିଁ ?

ଗୁରୁପ୍ରସାଦ : ଯେ ଭଳି ଏକ କବିତା ଲେଖିବା ପାଇଁ ଯେଉଁ ପ୍ରକାର faith ଦରକାର, ତା ମୋର ଆସୁନାହିଁ। I think I am basically a good person........ କିନ୍ତୁ ବେଳେ ବେଳେ ଏମିତି ଗୋଟେ feeling ଆସୁଛି......(... The agony is terrible....... When I am alone, really alone, with no one around me, I have a strange feeling. I don't know if one day I may pull a gun and shoot myself or hang myself from the fan-hook." [ ଏକା ନିଶ୍ୱାସକେ ଏତିକି କହି ସାରିଲା ପରେ ଏକ ତୀବ୍ର ବେଦନାବୋଧ ଗୁରୁପ୍ରସାଦଙ୍କ

ମୁଁ ଶିମଣ୍ଡଳକୁ ଅତିକ୍ରମ କରି ସାରିଥିଲା । ଦୁଇ ତିନି ମିନିଟ୍ ପାଇଁ ଆଉ କିଛି ପ୍ରଶ୍ନ ନ ପଚାରି ଆମେ ତାଙ୍କୁ ସମୟ ଦେଲୁ ନିଜକୁ ପୁଣି ଆତ୍ମସ୍ଥ କରି ନେବାକୁ । ]

'ମୂଲ୍ୟାୟନ' :—ଆପଣଙ୍କ ନିଜ କବିତାମାନଙ୍କରୁ କେଉଁ କେଉଁଟି ବା କବିତା ଗୁଡିକ ଆପଣଙ୍କର ବେଶୀ ପ୍ରିୟ ?

ଗୁରୁପ୍ରସାଦ '— ଏବେ ଥରେ ଥରେ ଯେବେ ସେଗୁଡ଼ିକୁ ପଢିବାକୁ ଚେଷ୍ଟା କରେ I find I can really go back to only two poems—'ଅନ୍ଧ ର ଜବାବ' ଓ 'ସିନ୍ଧୁଆ' । ଏକ ପ୍ରକାରର larger experience ମୁଁ ପାଏ ସେ ଦୁଇଟିରୁ । I think I have tried to do something very original there. ଅନ୍ୟ କବିତା ଗୁଡିକ ବିଶେଷତଃ, the early poems କେମିତି adolescent ଲାଗନ୍ତି । 'କାଳପୁରୁଷ' କଥା ତ କହୁଛି, patches of it are still good. ଏବେ ବି ଭଲ ଲାଗେ... But I cannot go back to the entire poem any more 'କାଳପୁରୁଷ'କୁ ସେତେବେଳେ ଯେଉଁମାନେ କହୁଥିଲେ 'It's a Cuttacki edition of 'The Waste Land' ସେମାନେ ବିଶେଷ କିଛି ଭୁଲ କହୁ ନ ଥିଲେ ।

'ମୂଲ୍ୟାୟନ' : ଆପଣଙ୍କ କବିତା ସଂକଳନକୁ 'ସମୁଦ୍ରସ୍ନାନ' ବୋଲି କାହିଁକି ନାଁ ଦେଇଛନ୍ତି, ଅଥଚ ସେଇ ନାମରେ ଆପଣଙ୍କର କୌଣସି କବିତା ସେ ସଂକଳନରେ ନାହିଁ ?

ଗୁରୁପ୍ରସାଦ : ଅନେକ ଦିନ ଧରି ମୁଁ ପୁରୀରେ ଥିଲି । ପୁରୀରେ ଥିଲା ବେଳେ ହିଁ ସେଥିରୁ ଅଧିକାଂଶ କବିତା ଲେଖି

ଯାଇଥିଲା । ତାପରେ ବି ସମୁଦ୍ର purification ର ପ୍ରସଙ୍ଗ...Contact with the Cosmic from which we have come and to which we ultimately return ଏ ଦଶ୍ରୁ ବିଶ୍ୱାସ ବି ଅଛୁ । ନାଁ ଟି actually ସଜ୍ଜନ୍ ବାବୁ suggest କରିଥିଲେ । ଅବଶ୍ୟ ମୁଁ ବେଳି ଭଲ ଗୋଟିଏ କ'ଣ ନାଁ କଥା ଭାବୁଥିଲି ।

'ମୂଲ୍ୟାୟନ' :—'ସମୁଦ୍ରସ୍ନାନ' କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିବା ଖବର ଆପଣ ଯେତେବେଳେ ପ୍ରଥମ ଶୁଣିଲେ, ଆପଣଙ୍କୁ କେମିତି ଲାଗିଲା ?

ଗୁରୁପ୍ରସାଦ :—ସାର୍ ( ଆଇ ମିନ୍, ପ୍ରଫେସର ବି: ଦାସ ) ମୋତେ ଟେଲିଫୋନ୍ କରି ପ୍ରଥମେ ଖବରଟି ଦେଇଥିଲେ । Naturally, I just felt happy, but I must say I was more interested in the money part of it.

'ମୂଲ୍ୟାୟନ' :—ଆଗରୁ ଶୁଣିଥିଲି, ଏବଂ ଏ ସାକ୍ଷାତକାର ସମୟରେ ବି ଲକ୍ଷ୍ୟ କରୁଛୁ, ନିଜ କବିତା ସଂପର୍କରେ ଆପଣ ଭୀଷଣ ନିର୍ଲିପ୍ତ ଓ ଉଦାସୀନ । ଏ ନିର୍ଲିପ୍ତତା ଗୋଟାଏ 'ପୋଜ୍' ନା ସେଥିରେ ଆନ୍ତରିକତା ଅଛି ?

ଗୁରୁପ୍ରସାଦ :—ନା, 'ପୋଜ୍' ଆଦୌ ନୁହେଁ । କାରଣ I have seen the wide world, and living is surely more interesting than poetry. କେତେବେଳେ ମନ ହୋଇଥିଲା, ଏମିତି କିଛି କବିତା ଲେଖି ଦେଇଥିଲି, ତା' ନେଇ ମୁଣ୍ଡ ଖେଳେଇବା କ'ଣ ଦରକାର ? ମୁଁ କହୁନାହିଁ, Poetry does not matter, but it matters for the initiated. ଜଣେ ଡାକ୍ତର, ଇଂଜିନିୟର, ଜଣେ soldier, how does he need to bother about poetry ? Lots of people go on living without reading a line of poetry.

'ମୂଲ୍ୟାୟନ' :—ମନେ ହୁଏ; ଆପଣଙ୍କ କବିତାରେ ଅନୁଭୂତିର କ୍ୟାନ୍‌ଭାସ୍ ବେଶ୍ ଗ୍ରେଟ୍, ଗଭୀର ହେଲେ ମଧ୍ୟ ପରିସର ସଂକୀର୍ଣ୍ଣ ଓ ବୈଚିତ୍ର୍ୟହୀନ । ଆପଣଙ୍କ 'ଅକସ୍ମାତ' ଓ 'ଭେଣ୍ଟିଲେଟର'ର ପରିସର ମଧ୍ୟ ସେତେ ବିସ୍ତୃତ ନୁହେଁ, ଅନେକ ସମୟରେ ଗୋଟିଏ ଶବ୍ଦକୁ ବାର୍ ବାର୍ ଦୁଇଥର ପ୍ରୟୋଗ କରି ଅପଣ ଏକ ପ୍ରକାର ଛନ୍ଦ ସୃଷ୍ଟି କରିବାକୁ ଚେଷ୍ଟା କରିଥାନ୍ତି, ଏଇ ଧରନ୍ତୁ " ଅଳ୍ପ ଅଳ୍ପ

ଦସି ଦସି, ('କାଳପୁରୁଷ') ବା 'ଘୁଇ ଯାଏ ନଇଁ ନଇଁ' ('ପ୍ରିୟ ବାନ୍ଧବୀ') ଏ ସବୁ ସତ୍ତ୍ୱେ ଆପଣଙ୍କ କବିତାର ଆବେଦନ ପ୍ରଚୁର । କିପରି ?

ଗୁରୁପ୍ରସାଦ : ତା'ର ବିଚାର ଆପଣମାନେ କରିବେ । ମୁଁ ଖାଲି ଏତିକି କହିବି, ମୋର limited vocabulary ସତ୍ତ୍ୱେ ଲେଖିଲାବେଳେ ମୋର କେବେ ଅସୁବିଧା ହୋଇନାହିଁ, ମୁଁ ଯାହା ପ୍ରକାଶ କରିବାକୁ ଚାହିଁଛି, ପାରିଛି । ଆଉ; ଯେଉଁ ଛନ୍ଦ ମୁଁ ସୃଷ୍ଟି କରିବାକୁ 'ଚେଷ୍ଟା' କରିଛି ବୋଲି ଆପଣ କହୁଛନ୍ତି, ମୁଁ କୌଣସି ପ୍ରକାର 'ଚେଷ୍ଟା' କରିନାହିଁ । It has come naturally to me.

'ମୂଲ୍ୟାୟନ' : ନିର୍ଜନତା ଓ କ୍ଷୟ ସମ୍ପର୍କିତ ରୂପକଳ୍ପ ସୃଷ୍ଟି କରିବାରେ ଆପଣ ସିଦ୍ଧହସ୍ତ ମନେ ହୁଅନ୍ତି । କିଛି ମନ୍ତବ୍ୟ ଦେବେ ?

ଗୁରୁପ୍ରସାଦ : ମୋ କବିତାର ନିର୍ଜନତା might have something to do with my own sense of loneliness. ଏବଂ sense of decay ବିଷୟରେ କହିବି, it perhaps comes from my awareness of Time, the cosmic perspective, man's place in the universe etc. etc.

'ମୂଲ୍ୟାୟନ' : ଆପଣଙ୍କ କବିତାର ଆବେଦନ ଯେ ପ୍ରଚୁର, ତା'ର ଅନ୍ତତଃ ଗୋଟିଏ ପ୍ରମାଣ ହେଉଛି ଯେ ସାତ ଆଠ ବର୍ଷ ଭିତରେ 'ସମୁଦ୍ର ସ୍ନାନ'ର ଚତୁର୍ଥ ସଂସ୍କରଣ ହୋଇ ସାରିଲାଣି ।

ଗୁରୁପ୍ରସାଦ : 'ସମୁଦ୍ର ସ୍ନାନ'ର ଚତୁର୍ଥ ସଂସ୍କରଣ ହୋଇ ସାରିଲାଣି ?

'ମୂଲ୍ୟାୟନ' : ଆପଣ ଜାଣି ନାହାନ୍ତି ?

ଗୁରୁପ୍ରସାଦ : ଜାଣି ନାହିଁ, କି ଜାଣିବାକୁ ଚାହେଁ ନାହିଁ । ମୋ' ପ୍ରକାଶକ ଯେତେବେଳେ ମୋ କବିତା ଗୁଡ଼ିକ ଏକ ସଙ୍କଳନ କରି ପ୍ରକାଶ କରିବାକୁ ଇଚ୍ଛାକରି ମୋତେ ସେ ପ୍ରସ୍ତାବ ଦେଲେ, ମୁଁ'

ଆଶ୍ଚର୍ଯ୍ୟ ହୋଇଗଲି । କବିତା, ପୁଣି ମୋ' କବିତାର ସଂକଳନ ! କିନ୍ତୁ ସେ ଜିଦ୍ କରିବାରୁ ମ୍ୟାନୁସ୍କ୍ରିପ୍ଟଟି ତାଙ୍କୁ ଦେଇ କହିଲି : "ଯଦି ବିକ୍ରି ହୁଏ, ତା' ହେଲେ ଛାପନ୍ତୁ । କିନ୍ତୁ ଲାଭ କ୍ଷତି କଥା ମୋତେ କିଛି କହିବେ ନାହିଁ । କ୍ଷତି ତ ଆପଣଙ୍କର, ଲାଭ ହେଲେ ବି ଆପଣଙ୍କର ।'

'ମୂଲ୍ୟାୟନ' : ଏତେ କମ୍ କବିତା ଲେଖି ଖୁବ୍ କମ୍ କବି ଆପଣଙ୍କ ଭଳି ଏତେ ପ୍ରସିଦ୍ଧ ହୋଇଛନ୍ତି । କାରଣ କ'ଣ ହୋଇପାରେ ?

ଗୁରୁପ୍ରସାଦ : ମୋ' ସମ୍ପର୍କରେ ତ ଅନେକ Scandal. ମୁଁ ଭାବୁଛି ସେଗୁଡ଼ିକ ଯୋଗୁଁ ଅନେକ ପାଠକ ମୋ' କବିତା ପ୍ରତି ଆକୃଷ୍ଟ ହୋଇଥିବେ । [ଏତିକ ଗୁରୁପ୍ରସାଦ ଅତି ଲଘୁ ସ୍ୱରରେ କହିଥିଲେ ।]

'ମୂଲ୍ୟାୟନ' : ଆମେ ଭାବୁଛୁଁ, ଓଡ଼ିଆ କବିତାରେ ଏକ ପ୍ରକାର ଶୂନ୍ୟସ୍ଥାନ (ମାନେ Vacuum) ଥିଲା ଯାହାକୁ ଆପଣଙ୍କ କବିତା ବୋଧହୁଏ ପୂରଣ କରିପାରିଲା ।

ଗୁରୁପ୍ରସାଦ : ତା' ବି ହୋଇପାରେ । ●

**—ଶରତ ଚନ୍ଦ୍ର ଶତପଥୀ, ପ୍ରଫୁଲ୍ଲ କୁମାର ଜଗଦେବ**

---

।। 'ସମୁଦ୍ରସ୍ନାନ' ପରବର୍ତ୍ତୀ କବିତା ।।

---

## ବାବା ପାଇଁ ଗୋଟିଏ କବିତା

ଏ ଶୀତର ଏ କୁହୁଡ଼ି ତୋର ବୁଢ଼ୀ ମାଆ ପରି
ତା' ଆଖିର ଫିକା ପେଜ, ତା ମୁଣ୍ଡର ଧଳା ଝୋଟ ପରି
ଆଜି ତାର ଗୃହିଣୀର ଝାପ୍‌ସା ଆକାଶ ସବୁ
ମରିଥିବା ପୃଥିବୀର ସ୍ମୃତିର ଯନ୍ତ୍ରଣା ନେଇ
ପାହାଡ଼ରେ ଏ ଶୀତର ଛଇ ଛଇ ଧଳା ଦାଗ ପରି ।

ସେ ଆମେ ସେମିତି ଟିକେ ଧଳା ଶାଳ ଘୋଡ଼ି ହୋଇ
ବାଡ଼ି ଧରି ନଇଁ ନଇଁ
ତା' ପଛରେ କେତେ ନଣ୍ଡ, କେତେ ତେଜ, କେତେ ସୁଅ
କେତେ ବାଟ ଅପନ୍ତରା ସୋପ ଆଉ କେତେ ଥକା ମୁହଁ
ତା' ଧଳା ଗୃଦର ତଳେ ଶୁଖିଥିବା କ୍ଷୀର କେତେ
ଅଶ୍ରୁ ହୋଇ ଯାଇଥିବା ଜନ୍ମର କେତେ ନାହିଁ—
କେତେ ଯେ ସେ ଅନନ୍ତ ସମସ୍ତ ।

ତୋ' ଆଖିର ଏଇ ତଗ
ମୋ ଅଖି ତଗରୁ ନଏ ନଟ୍ଟେଇ ଖେଳଣା କେତେ
କେତେ ଭଙ୍ଗା କାଣ୍ଡରର ହାତ ଗୋଡ଼ ଭଙ୍ଗା ଚକ
କେତେ ଷ୍ଟିଙ୍ଗ ପେଁକାଳି, ପୁଣି କେତେ ରଙ୍ଗର ଆଲୁଅ
ତୋ' ବୁଢ଼ୀ ମାଆର ଆଖିତଗରୁ ବି ଅଖି ମୋର
ଏମିତି ଚହଳ ବନେ ଆଣିଥିଲି କେତେ ଗପ କେତେ ଗୀତ
କେତେ ଯେ ଆକାଶ ଡେଇଁ କେତେ ଦୁଡ଼ି ବେଲୁନ୍ ରେ
କେତେ ଲୁହ କେତେ ଡର କେତେ ବୁଢ଼ୀ ଅସୁରୁଣୀ ମୁହଁ,

ମୋ ବୋଉର ଆଖି ପରି ତୋ' ଆଖିର ଏ ଆକାଶ
ତୋ ଆଖିର କଳାବେଣ୍ଟ, କଳା ମେଘ, ନେଳି ପ୍ରଜାପତି
ଖରା ମେଘ ବସନ୍ତର ମହୁ ସବୁ ପିଇ ପିଇ
ପାରି ହୋଇ ପାଠପଢ଼ା, ହକି ଆଉ ଫୁଟବଲ
ପ୍ରେମ ଆଉ ଚିଠି ଲେଖା, ରୋଗ ଆଉ ଦାରିଦ୍ର୍ୟର ସବୁ ସ୍ୱପ୍ନକ୍ଷତ
ତୋ ଆଖି ଆକାଶ ଡାଉ ମୋ ବୋଉ ଆକାଶ ପରି
ପାରି ହୋଇ ମହାକାଶ, ମହାକାଳ, ସେ ମୃତ୍ୟୁର ଦୁର୍ନିବାର ଗତି

ଏ ଶୀତର ଏ କୁହୁଡ଼ି ବାଡ଼ି ଧର ନଈ ନଈ
ପାହାଡ଼ ଉଠାଣି ଚଢ଼ି
ତୋ' ଧଳା ଗୁଦର ତଳେ, କେତେ ଗଛ ଡଣ୍ଟା କେତେ
କେତେ ବନଜଙ୍ଗଲର ଧୂଳି
ଶୀତ୍କାରୀ ବାଘର ନଖ କାମ୍ପାର ଡେଣାସବୁ
ତୋ' ଧଳା ଗୁଦର ତଳେ ପାଟଲ ଧାନର ବାସ୍ନା
ଝିଂଝିଟିରେ ଝିଁ ଝିଁ
ବାଦୁଡ଼ି ଡେଣାର ଗ୍ଲାଇ
ଟିକ୍ ଟିକ୍ ଶବ୍ଦ କେତେ ତା ହାଡ଼ର ଝୁଲିଥିବା କାଚ ଗୁଣ୍ଡ ପର,
ଏ ଶୀତର ଏ କୁହୁଡ଼ି ପାହାଡ଼ ଉଠାଣି ଚଢ଼ି, ଭୁଲିଯିବ
ତୋ' ଆଖିର ଆକାଶ ସେପାର
ମୋ ଆଖିର ମେଘ ଡେଇଁ ତୋ'ର ବୁଢ଼ୀମା ଯାଏ
ତୋ' ଆଖି ତଳରୁ ଖସି
ଆଦିଅନ୍ତ ଆସମୁଦ୍ର ଆଜନ୍ମର ସମସ୍ତ ସେପାର,
ଏ ଶୀତର ଏ କୁହୁଡ଼ି ମୋ ବୋଉ ତୋ' ବୁଢ଼ୀମାଆ—
ମୋ'ବୁଢ଼ୀମାଆର ତମ
ଧଳା ଶାଲ ଗୁଦରର ଅପରନ୍ତ ଆକାଶ ଆକାଶ
ଆଜିଠେଣୁ ତୋ'ଆଖିର ତାରାରେ ମୋତେ ଦିଶୁ ହୁଏ, ମୋର ଜନ୍ମଜନ୍ମାନ୍ତର
ବହୁ ଲକ୍ଷ ବଳୟର ଇତିହାସ । ●

## ବାବା ପାଇଁ ଆଉ ଗୋଟିଏ କବିତା

ଆଜଠାରୁ ତା ବାଟରେ ଫୁଲ ହେଉ ଖଇ ହେଉ
ଚନ୍ଦନ ଓ ଝୁଣାର ବାସ୍ନାରେ

ତା' ବାଟରେ ମୁହଁ ସବୁ ହୋଇଯାଉ ନିଷ୍ପ୍ରଭ ନୀରବ
ପଛରେ ତ ବାଟ ତାର ନନ୍ଦମାନ୍ତ ଆବର୍ଜନାମୟ
ତା' ପାଦର ଶବ୍ଦ ସେଠି ନାହିଁ ମୋଟେ ଅଙ୍କ ଆଉ ନାହିଁ,
ତା' ଯିବାର ମୁହୂର୍ତ୍ତରେ ବର୍ଷା ଆଉ ଅପରିଚ୍ଛନ୍ନତା
ଚୁପ୍‌ଚୁପ୍ ତା ମୁହଁର ବିକୃତିର ନିଃସଙ୍ଗତା ନେଇ
ଆଖି ବୁଜି ତା' ଦୃଷ୍ଟିର ସେ ବା କଣ ଦେଖୁଥିଲା ?
ଅସ୍ପଷ୍ଟ ନକ୍ଷତ୍ର ବହୁ ମୁହଁର ବିକୃତି ଅବା ?
କ୍ଳାନ୍ତ କ୍ଳାନ୍ତ କ୍ଳାନ୍ତ ଖାଲି — ବିରକ୍ତ ବା ପରିସମାପ୍ତିର ?
ଅବା ମୋ ଜେଜେର ମୁହଁ କଳାଧଳା ବାଙ୍କ ନଶ
ଅତର ଓ ଗୁଣ୍ଡି ପାନ ବଙ୍କା ବାଡ଼ି, ରୁପା ପାନଡିବାର ସଉକ ?

ଅବା ତା ଦୃଷ୍ଟିରେ ଥିଲା ଦିଗନ୍ତ ଦିଗନ୍ତ ଖାଲି ?
ଅନନ୍ତ ଶୂନ୍ୟତା ଘେରି ହାହାକାର ?
ଅବା ମହାସୁପ୍ତିର ବିସ୍ତାର ?

ତୋ ଆଖିର ତୋଳା ତଳେ ତା ମୁହଁର ଚମ ଆଉ ହାଡ଼
ତା ହସର ପାନବୋଳ, ତା ବାଳର ଧଳା ଝୋଟ ସବୁ
କେବେହେଲେ ପାଇନାହିଁ ଜୀବନ୍ୟାସ
ତେଣୁ ତୋର ଅସ୍ପଷ୍ଟ ସ୍ମୃତିରେ
ସାମ୍ନାର ସମସ୍ତ କେବେ ବ୍ୟତିବ୍ୟସ୍ତ ହେବ ନାହିଁ
ରାତିର କାକର ଅବା ଜହ୍ନଖୋର ତୋ ଲୁହ ଭିତରେ
ସେ ବୁଢ଼ୀର ଚମ ହାଡ଼ ଶୀତ ଆଉ କୁହୁଡ଼ି ସ୍ମୃତିରେ
କେବେ ତ ଫେରିବ ନାହିଁ ତୋ ଫେରିବା ବାଟର କ୍ଳାନ୍ତିରେ ।

ତା ଆଖିର କୁହୁଡ଼ିର ତୃପ୍ତି ଆସୁ ତୋର ମନ ଘେରି

ତା ହସରୁ ସ୍ନେହ ଆସୁ ତୋ ଦେହରେ ତାରି ସବୁ ଆଶୀର୍ବାଦ ନେଇ
ସେ ଆଜ ଗଲାଣି ଫେରି କାଠଯୋଡ଼ି ବାଲି ଭିତରକୁ
ସେ ଆଜ ଗଲାଣି ନେଇ ସମସ୍ତଙ୍କୁ ଏକ ମହା ପରମମାସ୍ତିକୁ,
ତା ବାଟରେ ଫୁଲ ପଡ଼ୁ ବର୍ଷା ହେଉ ଚନ୍ଦନ ଓ ଝୁଣା
ଅନ୍ତରୀକ୍ଷ ନକ୍ଷତ୍ର ଯେତେ ମୁହଁ ସବୁ ବିରକ୍ତିର
ଲେପ ପାଉ ଶୂନ୍ୟ ଆକାଶରେ
ଯାଯାବର ତା ଆତ୍ମାର ଗତି ହେଉ ତୋର ଗୀତ ପରି
ଅର୍ଥହୀନ ଉଲ୍ଲାସର ସାନ ସାନ ଅସରନ୍ତି ଢେଉ । ●

## ମୃତ୍ୟୁ

ମହାଶୟ,
କୌତୁହଳ ଠିକ୍ ନୁହେଁ...
ଏ ଦେହ ଓ ଦେହାନ୍ତର ସୀମା ଅବା
ଚେତନାର ପାଚେରି ସେପାଖେ
ଗ୍ଲେଟ ସ୍କୁଲ ପିଲାପରି ଫାଟକ ସେପାଖେ ଡେଇଁ
ଦେଖିବାର କୌତୁହଳ ନୁହେଁ ।
ଯେହେତୁ ମୁଁ ଠିକ୍ ଜାଣେ ଫେରିବାର ବାଟ ଏଠି ନାହିଁ
ଫେରିବାର ଏ ବାଟରେ ଅନ୍ଧାର କେବଳ ଫେରେ
ଯେହେତୁ ମୁଁ ଠିକ୍ ଜାଣେ ଫେରିବାର ଏ ବାଟରେ ଛାଇ ଅବା
ସ୍ମୃତି ଫେରେ ନାହିଁ
ଯେହେତୁ ମୁଁ ଠିକ୍ ଜାଣେ ଛାଇର ଦେହାନ୍ତ ନାହିଁ
ସମୟର ଛାୟାପାତ ନାହିଁ
ମହାଶୟ,
ସେ ମୃତ୍ୟୁରେ ଶୋଇଥିଲି ସେଦିନ ବର୍ଷାର
ଲୁହରେ ଭିଜିଥିଲା ସିକ୍ତ ଶାଳ ବଣ
କଜଳପାତିର ପରି ଆକାଶର ଭୁହା ଭୁହା ଅସରା ଅସରା

THE MULYAYAN : Orissa's Only Journal Devoted Exclusively to Literary Criticism : Vol II, No. 2.
Special Number on the Poetry of Guru Prasad Mohanty
*PRICE RUPEES FIVE ONLY*

---

# ବିଶେଷ ଘୋଷଣା

● 'ମୂଲ୍ୟାୟନ'—୯ ଓ 'ମୂଲ୍ୟାୟନ'—୧୦କୁ ଯଥାକ୍ରମେ 'ସ୍ୱାଧୀନତା ପୂର୍ବର ଓଡ଼ିଆ ଉପନ୍ୟାସ ବିଶେଷାଙ୍କ' ଓ 'ସ୍ୱାଧୀନତୋତ୍ତର ଓଡ଼ିଆ ନାଟକ ବିଶେଷାଙ୍କ' ରୂପେ ପ୍ରକାଶ କରିବାକୁ ଉଦ୍ୟମ କରାଯାଉଅଛି । ଏଥିରେ ସାଧାରଣ ମୂଲ୍ୟାୟନାତ୍ମକ ଓ ପୁନର୍ମୂଲ୍ୟାୟନାତ୍ମକ ପ୍ରବନ୍ଧମାନ ଛଡ଼ା ପ୍ରଧାନ ପ୍ରଧାନ ଔପନ୍ୟାସିକ ଓ ନାଟ୍ୟକାରମାନଙ୍କ କୃତି ସମ୍ପର୍କରେ ଆଲୋଚନାମାନ ମଧ୍ୟ ପ୍ରସ୍ତୁତ କରାଯିବ । ଆଗ୍ରହୀ ସୁଧୀ ସମାଲୋଚକବୃନ୍ଦ ଉକ୍ତ ବିଶେଷାଙ୍କଦ୍ୱୟ ସମ୍ପର୍କରେ ସମ୍ପାଦକଙ୍କ ସହ ପତ୍ରାଳାପ କରିବାକୁ ଅନୁରୋଧ । ପତ୍ରାଳାପର ଠିକଣା : ସମ୍ପାଦକ 'ମୂଲ୍ୟାୟନ', ପ୍ରଯତ୍ନେ-ସ୍ନାତକୋତ୍ତର ଇଂରାଜୀ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର-୭୫୧୦୦୪ ।

● 'ମୂଲ୍ୟାୟନ'ର ପ୍ରଥମ ବର୍ଷରେ ପ୍ରକାଶିତ ପାଞ୍ଚୋଟି ସଂକଳନର ଏକତ୍ର ସମାବେଶ କରାଯାଇ ବୋର୍ଡ ବନ୍ଧାଇ ସହ ତାର ମୂଲ୍ୟ ତିରିଶ ଟଙ୍କା ରଖାଯାଇଛି । ଏହାର ସଂଗ୍ରହଭିଳାଷୀ ବ୍ୟକ୍ତି/ ଅନୁଷ୍ଠାନମାନ ନିମ୍ନଲିଖିତ ଠିକଣାରେ ତିରିଶ ଟଙ୍କା ଅଗ୍ରୀମ ପଠାଇଲେ ରେଜିଷ୍ଟ୍ରି ପାର୍ସଲ ଦ୍ୱାରା ତାହା ଯୋଗାଇ ଦିଆଯାଇଥାଏ । ଠିକଣା : ପରିଚାଳନା ସମ୍ପାଦକ, 'ମୂଲ୍ୟାୟନ'
ପ୍ଲଟ ନଂ-ବି-୧, ଶହୀଦ ନଗର, ଭୁବନେଶ୍ୱର-୭

---

Edited by Prafulla Kumar Jagadeb. Published for Mahanadi Books, Bhubaneswar by Sri S. N. Jagadeb and printed by him at Mulyayan Press, Plot No. B-1. Sahid Nagar, Bhubaneswar-7, India. 'The Mulyayan'-7
January, 1979—February, 1980